ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଗ୍ରୀମ୍‌ସଙ୍କ ପରୀ-କାହାଣୀ

## ୨



ଗ୍ରନ୍ଥମନ୍ଦିର

ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଗ୍ରୀମ୍‌ସଙ୍କ ପରୀ-କାହାଣୀ

[ Grimms' Fairy Tales ]

[ ଦ୍ୱିତୀୟ ଖଣ୍ଡ ]

ଅନୁବାଦ :
ଶ୍ରୀ ବଂଶୀଧର ଦାଶ

ଗ୍ରନ୍ଥମନ୍ଦିର

# ସୂଚୀପତ୍ର



—

# ଦୁଇ ଭଉଣୀ

ବୁଢ଼ୀଟିଏ ଥାଏ ଯେ, ତାର ଦୁଇଟି ଝିଅ। ବଡ଼ ଝିଅଟି ଭାରି ସୁନ୍ଦରୀ, ଭାରି ବୁଦ୍ଧିମତୀ। ମାଆର ପଦେ କଥା ତଳେ ପକାଏନି, ସବୁବେଳେ କାମରେ ଲାଗିଥାଏ। କିନ୍ତୁ ସାନଟି ଅପରଛନୀଟାଏ। ତା ମୁହଁଟା ପେଚାମୁହଁ ପରି। ଦାନ୍ତଗୁଡ଼ାକ କୋଡ଼ି ପରି। କଥା କହେ ଟାଉଁଟାଉଁ। ଖାଇଲାବେଳକୁ ଆଗ, କାମବେଳକୁ ପଛ। ବସିଲାଠୁଁ ଉଠେନି। କିନ୍ତୁ ସେ ମାଆର କି ବୁଝାମଣା କେଜାଣି, ସାନଝିଅଟିକୁ ସବୁବେଳେ ଟେକିଥାଏ; ବଡ଼ଟିକୁ ମାର ମାର କରେ। ଘରେ କାମଦାମ ସରିଲେ ମାଆ ସାନଝିଅଟିକୁ ଧରି ଗପ କରେ। ବଡ଼ଝିଅକୁ ପାଛିଆରେ ପାଛିଏ ତୁଳା ଦେଇ କହେ, ''ଯା, କୂଅମୂଳେ ବସି ସୂତା କାଟ।''

ଇମିତି ସୂତା କାଟି କାଟି ବଡ଼ଝିଅର ହାତ ଘୋଳେଇଯାଏ; ଆଙ୍ଗୁଠି ଟିପରୁ ରକ୍ତ ଝରେ। ତଥାପି ସେ ମାଆ ଝିଅକୁ ଆହା ବୋଲି ପଦେ କହେନାହିଁ। ଦିନକର କଥା। ସୂତା କାଟୁ କାଟୁ ବଡ଼ଝିଅ ହାତରୁ ରକ୍ତ ଝରି ଟାକୁଡ଼ିଟା ଲାଲ ହୋଇଗଲା। ରକ୍ତ ଧୋଇବା ଲାଗି ସେ କୂଅପାଣିରେ ଟାକୁଡ଼ିଟା ବୁଡ଼ାଇଛି କି ନାହିଁ, ସେଇଟି ହାତରୁ ଖସିଗଲା ଯେ ଟୁବ୍‌କିନା ପାଣିରେ ବୁଡ଼ିଗଲା। ବିଚାରୀ କରେ କଣ! ମାଆ କି ଦଣ୍ଡ ନ ଦେବ ଭାବି ଡରି ଡରି ଯାଇ କହିଲା, ''ମାଆ, ଟାକୁଡ଼ିଟା କୂଅରେ ପଡ଼ିଗଲା।''

ମାଆ ଏଡ଼ିକି ପାଟି କରି କହିଲା, ''ଆଲୋ ଅଲକ୍ଷଣୀ, ସେତକ ସୂତା ହରେଇଲୁ, ଆହା ପରା ଟାକୁଡ଼ିଟାକୁ କୂଅରେ ପକେଇଦେଲୁ! ଆହୁରି ପୁଣି କହିବାକୁ ଆସିଛୁ? ଯା, ଯିମିତି ପକେଇଛୁ ସିମିତି କାଢ଼ିଆଣିବୁ। ନ ହେଲେ ମତେ ଚିହ୍ନିଛୁଟି?''

ଟାକୁଡ଼ି କାଢ଼ିବ ବୋଲି ବଡ଼ଝିଅ କୂଅମୂଳକୁ ଫେରିଆସିଲା। କିନ୍ତୁ କୂଅରେ ପାଣି ଭର୍ତ୍ତି, ସେଥିରୁ ବା ସେ ଟାକୁଡ଼ି କିପରି କାଢ଼ିବ? କିଛି ବୁଦ୍ଧିବାଟ ନ ପାଇ ଶେଷକୁ ସେ କୂଅ ଭିତରକୁ ଡେଇଁପଡ଼ିଲା। ଭରା କୂଅ। ଭରା କୂଅ ଭିତରେ ପଡ଼ିଲେ ମଣିଷ କି ବଞ୍ଚିବା କଥା! ପାଣିରେ ପଡୁ ପଡୁ ବିଚାରୀର ଚେତା ବୁଡ଼ିଗଲା। କିନ୍ତୁ ଚେତା ଫେରି ପାଉ ପାଉ ଦେଖିଲା, ସେ ଆସି ଏକ ଅପୂର୍ବ ରାଇଜରେ ପହଞ୍ଚିଯାଇଛି। ସେଠାରେ କୂଅର ପାଣି ନାହିଁ କି ପଙ୍କ ନାହିଁ; ଅଛି ଜାତିଜାତିକା ଫୁଲଗଛ, ଫଳଗଛ। ସେ ଭିତରେ ବୁଲୁ ବୁଲୁ ଦେଖିଲା, ସେଠାରେ ଗୋଟିଏ କୁଡ଼ିଆ ଅଛି। କୁଡ଼ିଆ ବାରଣ୍ଡାରେ ଚୁଲିଟିଏ

ପଡ଼ିଛି। ସେଥିରେ ଗୋଟିଏ ପୋଡ଼ପିଠା ବସିଥାଏ। ଏ ଝିଅକୁ ଦେଖି ପୋଡ଼ପିଠା କହିଲା– "ପୋଡ଼ିଗଲି, ପୋଡ଼ିଗଲି ଗଡ଼ ନିଆଁ ଭିତରେ
କାଢ଼ି ନିଅ, କାଢ଼ି ନିଅ କିଏ ଅଛ ମିତ ରେ।"

ପୋଡ଼ପିଠାର ଏ ଡାକ ଶୁଣି ଝିଅଟି ଯାଇ ଚୁଲି ଭିତରୁ ତାକୁ କାଢ଼ିଆଣିଲା। ପୋଡ଼ପିଠା କହିଲା, "ସତରେ ତୁ ଭଲ ଝିଅଟିଏ। ତୁ ମୋର ସାହା ହେଲୁ, ଦିଅଁ ତୋର ସାହା ହେବେ।"

ପୋଡ଼ପିଠା ପାଖରୁ ବିଦାହୋଇ ଝିଅଟି ଆଉ ଖଣ୍ଡେ ବାଟ ଯାଇଛି କି ନାହିଁ, ଦେଖିଲା, ଗୋଟିଏ ସେଓଗଛରେ ଗଛେ ସେଓ ଝୁଲୁଛି। ନାଲି ଟହଟହ ସେଓଗୁଡ଼ାକ ପାଚି ଫାଟିପଡୁଥାଏ। ଝିଅଟିକୁ ଦେଖି ସେଓଗଛ ତା ଡାଳପତ୍ର ହଲାଇ କହିଲା– "ଫଳଭାର ଆଉ ସହିପାରୁନି ମୁଁ କହୁଛି ଶୁଣ ମୋ କଥା
ଡାଳ ଝାଙ୍କିଦେଇ ଫଳ ଝାଡ଼ିଦିଅ ଦୂର ହେଉ ମୋର ବ୍ୟଥା।"

ସେଓଗଛର ଏ ମିନତି ଶୁଣି ଝିଅଟି ଗଛ ପାଖକୁ ଯାଇ ଡାଳଗୁଡ଼ିକ ଝାଙ୍କିଦେଲା। ପାଚିଲା ଫଳଗୁଡ଼ିକ ଦୁବ୍‌ଦାବ୍ ହୋଇ ତଳେ ଝଡ଼ିପଡ଼ିଲା। ସେଓଗଛ ଖୁସିରେ ଡାଳପତ୍ର ହଲାଇ କହିଲା, "ଝିଅ, ତୁ ପେଟଭରି ସେଓ ଫଳ ଖାଅ। ଯେ ଆନକୁ ଦୟା କରେ, ଦିଅଁ ତାକୁ ଦୟା କରନ୍ତି।" ସେଠାରେ କିଛି ସେଓ ଫଳ ଖାଇ ଝିଅଟି ଚାଲିଗଲା। ଯାଉ ଯାଉ ଦେଖିଲା ଫଳବଗିଚା ଭିତରେ ଗୋଟିଏ ଛୋଟ ଘର ଅଛି। ଘର ଦୁଆରମୁହଁରେ ଜଣେ ବୁଢ଼ୀ ବସି ତାକୁ ଚାହିଁରହିଛନ୍ତି। ଝିଅଟି ତାଙ୍କ ପାଖକୁ ଯାଇ କହିଲା, "ମାଉସୀ, ଏଇଠି ମୁଣ୍ଡିଆ ମାରୁଛି। ମୁଁ ମୋ ସୂତା ତାକୁଡ଼ି ଖୋଜିବାକୁ କୂଅରେ ପଶିଥିଲି ଯେ, ଆସି ତୁମ ଦେଶରେ ପହଞ୍ଚିଲିଣି; କାହିଁ ମୋ ତାକୁଡ଼ି ପାଉନି!"

ତା କଥା ଶୁଣି ବୁଢ଼ୀ କହିଲେ, "ଆଲୋ ଝିଅ, ତୁ ମୋର ଘରେ ରହିଯାଅ ଯେ ତୋର ସବୁ ଦୁଃଖ ଚାଲିଯିବ। କାମଦାମ ବେଶି କିଛି ନୁହେଁ ଲୋ, ଟିକିଏ ଘର ଖରକି ଦେଉଥିବୁ। ରନ୍ଧାବଢ଼ା ମୁଁ କରିବି। ତୁ କିନ୍ତୁ ସବୁଦିନ ମୋ ବିଛଣାଚଦର ଖଣ୍ଡିକ ଭଲକରି ଝାଡ଼ିଝୁଡ଼ି ଶେଯଟି ପାରିଦେଉଥିବୁ। ମୋ ଚଦର ଝାଡ଼ିଲେ ଯେଉଁ ତୁଳା ଝଡ଼ିପଡ଼ିବ, ସେତକରେ ଲୋକଙ୍କ ପାଖରେ ବରଷା ପହଞ୍ଚିଯାଉଥିବ।" କଥା କଣ କି, ସେ ବୁଢ଼ୀ ହେଉଛନ୍ତି ନିଜେ ଆଦିମାତା; ତାଙ୍କରି ଦୟାରୁ ଜଗତରେ ବରଷା ହୁଏ, ତୁଷାର ଝଡ଼େ। ଝିଅଟି ସେହିଦିନୁ ଆଦିମାତାଙ୍କ ଘରେ ରହିଗଲା। ସେ ତ ସହଜେ ଭଲପିଲା– କାମରେ କାହିଁକି ଖଇଚା କରନ୍ତା? ସଫାସୁତୁରା କରି ଘର ଖରକେ। ଝାଡ଼ିଝୁଡ଼ି ଶେଯ ପାରେ। ଆଦିମାତାଙ୍କର ତା ଉପରେ ଭାରି ସନ୍ତୋଷ। ଭଲରେ ଗଣ୍ଡିଏ ଖାଇପିଇ ସେଠାରେ କିଛିଦିନ ରହିଗଲା ସତ, ହେଲେ କିଛିଦିନ ଅନ୍ତେ ତାର ନିଜ ଘରକଥା ମନେପଡ଼ିଲା।

ସତରେ ନିଜ ଘରଠାରୁ ସୁନ୍ଦର ହୋଇ ଜଗତରେ ଆଉ କେଉଁ ଜାଗା ଭଲା ଅଛି? ଝିଅଟି ଖାଲି ନିଜ ଘରକୁ ଯିବାକୁ ଝୁରିହେଉଛି ଦେଖି ଆଦିମାତା କହିଲେ, "ଆଲୋ ମାଆ! ତୁ କିଛି ମିଛରେ ଝୁରିହେଉନୁ; ଯାହା ଘର ତାକୁ ସ୍ୱର୍ଗ। ଯା, ତୁ ଏଥର ତୋ ଘରକୁ ଯାଆ, ମୋର କିଛି ଅସନ୍ତୋଷ ନାହିଁ।"

ଝିଅଟି କହିଲା, "କିନ୍ତୁ ମୁଁ ଯିବି କିପରି? ମୁଁ ତ ବାଟ ଚିହ୍ନିନାହିଁ! ପୁଣି ମୋ ତାକୁଡ଼ିଟା ବି ପାଇଲି ନାହିଁ।"

ଏକଥା ଶୁଣି ବୁଢ଼ୀ କହିଲେ, "ଆସେ, ମୁଁ ତତେ ବାଟ ଦେଖାଇଦେବି। ତୋ ତାକୁଡ଼ିଟି ବି ମୁଁ ରଖିଛି, ନେଇ ଯା।" ଏହା କହି ସେ ତାକୁ ତାକୁଡ଼ିଟି ଦେଇଦେଲେ। ପିନ୍ଧିବାପାଇଁ ସୁନ୍ଦର ଲୁଗାପଟା ବି ଦେଲେ। ସେ ଲୁଗା ପିନ୍ଧି ଝିଅଟି ଦେଖାଗଲା ସତେ ଯେପରି ସେ ଗୋଟିଏ ରାଜାଝିଅ! ବୁଢ଼ୀ ତାକୁ ବାଗିଆଡ଼କୁ ନେଇ ଠିଆକରାଇଦେଲେ। ଠିକ୍ ସେତିକିବେଳକୁ ଆକାଶରୁ ଝୁପୁଝୁପୁ ହୋଇ ମୁଣ୍ଡା ମୁଣ୍ଡା ସୁନା ବରଷିବାକୁ ଲାଗିଲା। ବୁଢ଼ୀ କହିଲେ, "ଆଲୋ ଝିଅ, ଚାହିଁଛୁ କଣ? କାନି ପତେଇ କିଛି ନେଇଯା।" ଝିଅଟି କାନି ପତେଇଦେଲା। ଚାହୁଁ ଚାହୁଁ ସେଥିରେ ସୁନା ଭରିହୋଇଗଲା। ଏତେ ସୁନା! କିପରି ବୋହିବ ବୋଲି ସେ ଭାବୁଛି, ଏ ସମୟରେ ବରଷା ବନ୍ଦ ହୋଇଗଲା। ଦେଖାଗଲା, ସେ ତା ନିଜ ଘର ପାଖରେ ଠିଆହୋଇଛି। ବିଚାରୀ ମନଖୁସିରେ ଘରକୁ ଦୌଡ଼ିଗଲା। ତାକୁ ଦେଖି ଚାଳରେ ବସିଥିବା ଗଞ୍ଜା ରାବିଉଠିଲା—

"କୁକ୍କୁରେ କୁ! କୁକ୍କୁରେ କୁ!!
ସୁନାଥଳି ଧରି ସୁନାନାକୀ ଝିଅ ଆସିଲୁଟି ଲୋ ତୁ!"

ଏତେଦିନ ପରେ ଝିଅ ଏପରି ବେଶଭୂଷା ହୋଇ ଏତେ ସୁନା ଧରି ଫେରିଛି ଦେଖି ତା ମାଆ ଓ ଭଉଣୀ ଖୁସି ହୋଇଗଲେ ସତ, ହେଲେ ସାନ୍‌ଭଉଣୀ ପଚାରିଲା— "ନାନୀ, ତୁ ତ ଖାଲିହାତରେ ଯାଇଥିଲୁ, ଏତେ ଧନ-ସମ୍ପଦ ଆଣିଲୁ କିପରି?"

ବଡ଼ଝିଅ ମାଆ ଭଉଣୀଙ୍କୁ ସବୁକଥା କହିଗଲା। ସବୁ ଶୁଣିସାରି ମାଆ ସାନଝିଅକୁ କହିଲା, "ହଇ ଲୋ ମା, ତୋ ନାନୀ ଯାଇ ଏତେ କରିପାରିଲା; ତୁ ପାରିବୁ ନାହିଁ?" ସାନଝିଅ ତ ସେହି କଥା ଭାବୁଥିଲା। ମାଆକଥା ଶୁଣି ସେ କହିଲା, "ଏଥିରେ କୋଉ କାମ ଅଛି ଯେ, ମୁଁ ପାରିବି ନାହିଁ? ଯାଏ, ଆଜି ମୁଁ କୂଅମୂଳେ ବସି ସୂତା କାଟେ।"

ଏପରି କହି ସେ ପାଛିଏ ତୁଳା ଧରି କୂଅମୂଳେ ବସି ସୂତା କାଟିଲା। ସେ ତ ସହଜେ ଅଳସେଇ, ସେ କାହିଁକି ଦେହ ଲଗେଇ କାମ କରନ୍ତା? ବିଣ୍ଡାଏ ହେବ ସୂତା କାଟିସାରି ରକ୍ତ ଝରିବ ବୋଲି ସେ ତା ଆଙ୍ଗୁଠିରେ

ଗୋଟିଏ କଣ୍ଟା ଫୋଡ଼ିଦେଲା। କଣ୍ଟା ଫୋଡ଼ିହୋଇ ଆଙ୍ଗୁଠିରୁ ଟୋପାଏ ରକ୍ତ ବାହାରିଲାରୁ ସେତକ ଟାକୁଡ଼ିର ସୂତାରେ ବୋଳିଦେଇ ସେଇଟିକୁ ଧୋଇବ ବୋଲି କୂଅକୁ ହାତ ବଢ଼ାଇଲା। ଧୋଇବା ବାହାନା କରୁ କରୁ ଟାକୁଡ଼ିଟି କୂଅରେ ପକେଇଦେଲା। "ଆହା, ଆହା, ମୋ ଟାକୁଡ଼ିଟା ପାଣିରେ ପଡ଼ିଗଲା ଲୋ!" କହି ମିଛିମିଛିକା କାନ୍ଦି କାନ୍ଦି ଟାକୁଡ଼ି ଆଣିବ ବୋଲି ସେ ବି କୂଅ ଭିତରକୁ ଡେଇଁପଡ଼ିଲା।

ସେ ତ କୁହୁକ କୂଅ– ସେଥିରେ ସେ ଅବା ବୁଡ଼ନ୍ତା କିପରି? ପାଣିରେ ବୁଡୁବୁଡୁ ସେ ଦେଖିଲା, ସେ ବି ତା ନାନୀ ପରି ଯାଇ ଗୋଟିଏ ଅପୂର୍ବ ରାଇଜରେ ପହଞ୍ଚିଯାଇଛି। ନାନୀ ପରି ସୁନାମୁଣ୍ଡା ଆଣିବା ଲୋଭରେ ତବତର୍ବ୍ବେ ପାଦ ପକାଇ ସେ ଚାଲିଛି, କୁଡ଼ିଆ ବାରଣ୍ଡାରୁ ପୋଡ଼ପିଠା ଡାକପକାଇଲା–

"ପୋଡ଼ିଗଲି, ପୋଡ଼ିଗଲି ରଡ଼ ନିଆଁ ଭିତରେ
କାଢ଼ି ନିଅ, କାଢ଼ି ନିଅ କିଏ ଅଛ ମିତ ରେ।"

ସେ ଡାକ ଶୁଣି ପେଚ୍ଛାମୁହାଁ ଝିଅ କହିଲା, "ତୁ ପୋଡ଼ିଯା କି ପାଉଁଶ ହୋଇଯା, ମୋର କିଏ ତତେ କାଢ଼ିବାକୁ ଯାଉଛି!" ଏ କଥା ଶୁଣି ପୋଡ଼ପିଠା ସେଁ ସେଁ ନିଃଶ୍ୱାସ ଛାଡ଼ି କହିଲା, "ତୁ ମୋତେ ସାହା ହେଲୁନି, ତତେ ଦଇବ ସାହା ହେବନି।" ପେଚ୍ଛାମୁହାଁ ମୁହଁ ମୋଡ଼ିଦେଇ ଆଗେଇଚାଲିଛି, ସେଓଗଛ ପଡ଼ିଲା। ସେ ଗଛରେ ଟହଟହ ହୋଇ ଗଛେ ପାଚିଲା ସେଓ ଝୁଲୁଥାଏ। ସେଓଗଛ ଡାକପକାଇଲା–

"ଫଳଭାର ଆଉ ସହିପାରୁନି ମୁଁ କହୁଛି ଶୁଣ ମୋ କଥା
ଡାଳ ଝାଙ୍କିଦେଇ ଫଳ ଝାଡ଼ିଦିଅ ଦୂର ହେଉ ମୋର ବ୍ୟଥା।"

କିନ୍ତୁ ପେଚ୍ଛାମୁହାଁ ସେଥିରେ ଚକିଲା ନାହିଁ କି ଚମକିଲା ନାହିଁ। ସେ ତା ବାଟେ ବାଟେ ଚାଲିଥାଏ। ସେଓଗଛ କହିଲା, "ତୁ ତ ମତେ ଦୟା କଲୁନି, ତତେ କିଆଁ ଦିଅଁ ଦୟା କରିବେ?" ପେଚ୍ଛାମୁହାଁ ସେ ଆଡ଼କୁ କାନ ନ ଦେଇ ଚାଲିଗଲା। କିଛି ସମୟ ପରେ ସେ ଯାଇ ସେହି ଆଦିମାତାଙ୍କ ଘର କତିରେ ପାଇଗଲା। ବୁଢ଼ୀଙ୍କୁ ଦେଖୁ ଦେଖୁ ସେ ଧରିନେଲା ଯେ ଏହି ବୁଢ଼ୀ ତା ନାନୀକୁ ଧନ-ସମ୍ପଦ ଦେଇଥିବେ। ତେଣୁ ତାଙ୍କୁ ଗୋଟିଏ ଦଣ୍ଡବତ ପକାଇ କହିଲା, "ମାଆ, ମତେ ତୁମ ଘରେ ରଖନ୍ତ ନାହିଁ?"

ବୁଢ଼ୀ କହିଲେ, "ଆଲୋ, ମୁଁ ତ ଝିଅଟିଏ ଲୋଡୁଥିଲି। ତୁ ଆସି ବଳେ ପହଞ୍ଚିଲୁ, ନ ରଖିବି କିଆଁ? କିନ୍ତୁ କାମପାଇଟି କରିବୁଟି?"

"ହଁ କରିବି" କହି ପେଚ୍ଛାମୁହାଁ ବୁଢ଼ୀଙ୍କ ଘରେ ରହିଗଲା। କିନ୍ତୁ ସେ ତ ଅଳସେଇ। କଥାରେ ଅଛି, ଯାହା ନ ହେଲା ବାଳୁତ କାଳେ, ତା କି

ହୋଇବ ପାରିଲା ନାହିଁ। ପିଲାଦିନରୁ ଯେ କାମ କରିନାହିଁ, ସେ କି ବଡ଼ ହେଲେ କାମ କରିପାରିବ? ପେଡ଼ାମୁହାଁ ଦିନଟିଏ ଘର ଖରକି, ଶେଯ ପାରି ଦେଉ ଦେଉ କୁଣ୍ଢେଇ-ଶୃଙ୍କେଇ ହେଲା। ଦ୍ୱିତୀୟ ଦିନରୁ କାମରେ ଖଇରା କଲା। ବିଛଣାଚଦର ଖଣ୍ଡିକ ବି ଝାଡ଼ିଲା ନାହିଁ। ଆଦିମାତା ଯେତେବେଳେ ଏକଥା ଜାଣିଗଲେ, ସେତେବେଳେ ତାକୁ କହିଲେ, ''ଝିଅ, ତୋର ଏଥର ଘରକୁ ଫେରିବା ବେଳ ହୋଇଗଲାଣି, ଫେରିଯିବୁ।''

ଅଳସେଇ ତ ସେହି କଥାକୁ ଚାହିଁବସିଥିଲା। କହିଲା, ''ହଁ ମାଆ! ମୁଁ ଆମ ଘରକୁ ଫେରିଯିବି। ମତେ ଟିକିଏ ବାଟ ବତାଇଦିଅ।''

ଆଦିମାତା ତାକୁ ବାଗିଆଡ଼କୁ ନେଇଯାଇ ତା ହାତରେ ତାକୁଡ଼ିଟି ଧରାଇଦେଲେ। କହିଲେ, ''ଏହି ବାଟରେ ଚାଲିଯାଆ।'' ଠିକ୍ ସେତିକି ବେଳକୁ ଆକାଶରେ କଳା ହୋଇ ମେଘ ଘୋଟିଆସିଲା। ପେଡ଼ାମୁହାଁ ଧରିନେଲା ଏଥର ସୁନା ବରଷା ହେବ। ତେଣୁ ସେ ତା ଲୁଗାକାନି ପାତି ଠିଆହୋଇଗଲା। ସଙ୍ଗେ ସଙ୍ଗେ ସୁ-ସୁ ଗର୍ଜନ କରି ବର୍ଷା ପବନ ମାଡ଼ିଆସିଲା। କିନ୍ତୁ ସୁନା ତ ବର୍ଷା ହେଲା ନାହିଁ; ବର୍ଷା ହେଲା ଖାଲି ପିଚୁ ଆଉ ରାକ। ପେଡ଼ାମୁହାଁର ତାଳୁଠାରୁ ତଳିପାଯାଏ ପିଚୁ ବୋଳିହୋଇଗଲା। ସେ ତହଳବିକଳ ହୋଇ ଦୌଡ଼ିଲା। ବର୍ଷା ଛାଡୁ ଛାଡୁ ସେ ଦେଖିଲା ଯେ, ସେ ତା ଘର ପାଖରେ ଠିଆହୋଇଛି। ତାକୁ ଦେଖୁ ଦେଖୁ ଚାଳରେ ବସିଥିବା ଗଞ୍ଜା ରାବିଉଠିଲା –

''କୁକ୍‌କୁରେ କୁ! କୁକ୍‌କୁରେ କୁ!!
ପିଚୁ ବୋଳିହୋଇ ପେଡ଼ାମୁହାଁ ଝିଅ ଆସିଲୁଟି ଲୋ ତୁ!!''

ଗଞ୍ଜାର ରାବ ଶୁଣି ପେଡ଼ାମୁହାଁର ମାଆ ଅତରଛ ହୋଇ ବାହାରକୁ ଆସି ଦେଖେ ତ ଝିଅର ଏ ରୂପ!! ଝିଅକୁ ସେ କେତେ ପୋଛିଲା, କେତେ ମାଜିଲା; ହେଲେ ଝିଅ ଦେହରୁ ସେ ପିଚୁ କଳା ଛାଡ଼ିଲାନାହିଁ।

# ରାଜାଙ୍କ ବଢ଼େଇ

ଜଣେ ଗଉଡ଼ ଥିଲା ଯେ, ବୁଢ଼ାକାଳକୁ ତାର ପୁଅଟିଏ ହେଲା। ଅପୁଅା ଘରେ ପୁଅ। ଗରିବ ହେଲେ କଣ ହେଲା, ଆନନ୍ଦ ଉହ୍ଲବ କରି ଜ୍ୟୋତିଷଙ୍କୁ ଡାକି ସେ ପୁଅର ଜାତକ ଲେଖେଇଲା। ଜାତକ ଲେଖିସାରି ଜ୍ୟୋତିଷ କହିଲେ, ''ବୁଝିଲ, ଏ ପୁଅ ଯୋଗଜନ୍ମା ପୁଅ। ଯା ରାଶିନକ୍ଷତ୍ର ଏମିତି ଯେ, ଏ ପିଲା ଷୋଳବରଷର ହେଉହେଉ ରଜାଝିଅକୁ ବାହା ହେବ – ରାଜରାଜାଧୀଶ୍ୱର ହେବ।''

କଥାଟି ଗାଆଁସାରା ରଟିଗଲା। କିଛିଦିନ ପରେ ଦୈବଯୋଗକୁ ସେ ଦେଶର ରାଜା ଆସି ଦିନେ ସେ ଗାଆଁରେ ପହଞ୍ଚିଗଲେ। ଗାଆଁର ହାଲ ବୁଝୁବୁଝୁ ଗଉଡ଼ପୁଅର କଥା ବି ରାଜାଙ୍କ କାନକୁ ଆସିଲା। ସେ ରାଜାଙ୍କର ମହା ବଢ଼େଇ। ଛାର ଗଉଡ଼ ଟୋକାଟାଏ, ତାଙ୍କ ଝିଅକୁ ବାହା ହେବ— ଏକଥା ସେ ମୋଟେ ଭାବିପାରିଲେ ନାହିଁ। ଭାବିଲେ— ମୂଳୁ ମାଇଲେ ଯିବ ସରି, ଦେବଙ୍କ ସଙ୍ଗେ କିମ୍ପା କଳି ? ଏପରି ଭାବି ସେ ଯାଇ ଗଉଡ଼ ବୁଢ଼ା ଘରେ ପହଞ୍ଚିଗଲେ। ତା' ଭଲମନ୍ଦ ପଚାରିସାରି ରାଜା କହିଲେ, "ଆରେ, ତୁ ଆସି ବୁଢ଼ା ହେଲୁ। ଦିନେ ହେଲେ ସୁଖ କଣ ଜାଣି ପାରିଲୁ ନାହିଁ। ତୋ ପୁଅଟିକୁ ମତେ ବିକିଦେ ଯେ, ମୁଁ ତତେ ସୁଖରେ ଚଳିବା ଭଳି ଧନରତ୍ନ ଦେବି। ଶେଷକାଳକୁ ହେଲେ ଟିକିଏ ଆରାମରେ ଚଳିବୁ।"

କିନ୍ତୁ ଗଉଡ଼ ଗଉଡୁଣୀ ଏ କଥାରେ ରାଜି ହେଲେ ନାହିଁ। ରାଜା ଏଣେ ସେ କଥା ଜିଦ୍‌ଧରିଲେ। ନାନା ଲୋଭ ଦେଖାଇ, ନାନା ଆଶା-ଭରସା ଦେଇ ନପାରିବାରୁ ଶେଷକୁ ଧମକଚମକ ବି ଦେବାକୁ ବସିଲେ। ଗଉଡ଼ ବିଚରା ନିରୀହ ଲୋକ। ଶେଷରେ ସେ ରାଜାଙ୍କ ପାଲରେ ପଡ଼ିଗଲା। ପୁଅଟିକୁ ବିକିଦେଲା। ରାଜା କଣ କଲେ ନା, ପୁଅଟିକୁ ନେଇ ଗୋଟିଏ ନିବିଡ଼ ସିନ୍ଦୁକ ଭିତରେ ପୂରାଇ ନଈରେ ଭସାଇଦେଲେ। ସେ ଏକ ବଡ଼ ନଈ, ଅକାତକାତ ପାଣି। ସିନ୍ଦୁକ କେତେ ନାହିଁ କେତେ ଦୂରଯାଏ ଭାସି ଭାସି ଚାଲିଗଲା। କିନ୍ତୁ ସେ ତ ଯୋଗଜନ୍ମା ପୁଅ। ଏ ତା' କପାଳଲିଖନ ଯେ, ରାଜାଘର ଜ୍ୱାଇଁ ହେବ— ସେ କିପରି ନଈରେ ବୁଡ଼ି ମରନ୍ତା ! ସିନ୍ଦୁକରେ ପାଣି ପଶିଲା ନାହିଁ, କି ସେ ପୁଅ ମଲା ନାହିଁ। ଅନେକ ଦୂରରେ କଣ ହୋଇଥାଏ ନା, ନଈକୂଳରେ ଗୋଟିଏ ଅଟାଳକ ଥାଏ। ଅଟାଳକ ମାଲିକ ଦିନେ ନଈକୂଳରେ ବସିଛି, ଦେଖିଲା ଗୋଟିଏ ସିନ୍ଦୁକ ଭାସି ଭାସି ଯାଉଛି। ତା ମନରେ କୌତୂହଳ ଜାଗିଲା। ସେ ସଙ୍ଗେ ସଙ୍ଗେ ଲୋକ ଲଗାଇ ସିନ୍ଦୁକଟି କୂଳକୁ ନେଇଆସିଲା। କୂଳକୁ ଆଣି ସିନ୍ଦୁକ ଖୋଲିଦିଏ ତ, ତା' ଭିତରେ ଗୁଲଗୁଲିଆ ପୁଅଟିଏ ହାତଗୋଡ଼ ହଲାଇ ମୁରୁକି ମୁରୁକି ହସୁଛି। କଳମାଲିକର ପୁଅ ଝିଅ ନ ଥାନ୍ତି। ଏ ପୁଅ ନିଶ୍ଚୟ ଦଇବ-ଭେଟଣ ଜାଣି ସେ ତାକୁ ମହାଆନନ୍ଦରେ ଘରକୁ ନେଇଗଲା। ପୁଅଟିଏ ପାଇ ତା ଭାରିଯାର ଛାତି କୁଣ୍ଢେମୋଟ। ବଡ଼ ଗେଲବସର କରି ସେମାନେ ପୁଅଟିକୁ ପାଳିଲେ। ଚନ୍ଦ୍ରକଳା ପରି ପୁଅଟି ବଢ଼ିଲା। ପାଠଶାଠ ପଢ଼ି ପୁଅ ପଣ୍ଡିତ ହେଲା। ଖେଳ-କସରତ୍‌କୁ ଯିମିତି, ମେଳିଆପଣକୁ ସିମିତି। ତାକୁ ଯେ ଦେଖିଲା ସେ ମାନ୍ୟ କଲା। ଇମିତି ଷୋଳ ବରଷ ପୂରିବାକୁ ଯାଉଛି, ସେ ଦେଶ ରାଜା ଆସି ଦିନେ ସେ ଗାଆଁରେ ପହଞ୍ଚିଗଲେ। ଲୋକଙ୍କ ହାନିଲାଭ

ବୁଝୁବୁଝୁ ଏ ପୁଅଟି ଉପରେ ତାଙ୍କର ନଜର ପଡ଼ିଲା। ଏଡ଼େ ସୁନ୍ଦର ପୁଅ ଦେଖି, 'ସେ କିଏ' ବୋଲି ରାଜା ପଚାରିବସିଲେ। ଅଟାକଳ ମାଲିକ କହିଲା, ''ମଣିମା, ସେ ମୋ'ରି ପୁଅ।''

ରାଜା କହିଲେ, ''ତୁମ ଭାଗ୍ୟ ଭଲ, ନ ହେଲେ କି ଯା ପରା ପୁଅ ପାଆନ୍ତ!''

ଅଟାକଳବାଲା କହିଲା, ''ଦଇବ ଘଟଣାକୁ ପାଇଲି ମଣିମା! ନ ହେଲେ ତ ସେ ଭାସି ଭାସି କେଉଁଠିକି ନାହିଁ କେଉଁଠିକି ଯାଇଥାଆନ୍ତା, ତା କିଏ କହିବ?''

''ଭାସି ଭାସି କଣ?'' —ରାଜା ଆଗ୍ରହ ଦେଖାଇ ପଚାରିଲେ।

କଳବାଲା ଏଥର ମୂଳରୁ ଚୂଳଯାଏ ସବୁ ଘଟଣା ଗୋଟି ଗୋଟି କରି କହିଗଲା। ସବୁ ଶୁଣି ରାଜା ଜାଣିଗଲେ ଯେ ଏ ପୁଅ ନିଶ୍ଚୟ ସେହି ପୁଅ, ଯାହାକୁ ସେ ନଈରେ ଭସାଇ ଦେଇଥିଲେ। ତାର ରୂପ ଦେଖି ସେ ଯେତିକି ସନ୍ତୁଷ୍ଟ ହୋଇଥିଲେ, ଏଥର ସେ ସେତିକି ରକ୍ତଚାଉଳ ଚୋବେଇହେଲେ। ମନରେ ପୁଣି ଥରେ ଜିଦ୍ ଉଠିଲା— ଏ ଗଉଡ଼ ଟୋକାକୁ ସେ ନିଜର ଘରଜ୍ୱାଇଁ କରାଇ ଦେବେନାହିଁ। ପୁଣି ଥରେ କୂଟ ପାଞ୍ଚି ସେ ଅଟାକଳ ମାଲିକକୁ କହିଲେ, ''ବୁଝିଲ, ଏଭଳି ପୁଅ ଆମ ଦରବାରରେ ଭଲଲୋକଙ୍କ ଭିତରେ ବସିବା ଉଚିତ। ମୁଁ ଯାକୁ ଆଜିଠାରୁ କାମଦାମ ଶିଖାଇବି। ଆଜି ଏ ମୋର ଗୋଟିଏ ଜରୁରୀ ଚିଠି ନେଇ ରାଣୀଙ୍କ ପାଖକୁ ଯାଉ।''

ରାଜାଙ୍କ କଥା ଶୁଣି ଅଟାକଳ ମାଲିକ ଭାବିଲା, ଏଥର ତା' ଭାଗ୍ୟ ଖୋଲିଗଲା। ରାଜାଙ୍କ ଶୁଭଦୃଷ୍ଟି ପଡ଼ିଲାଣି; ଆଉ କୌଣସି କଥାର ଅଭାବ ରହିବ ନାହିଁ। ତେଣୁ ସେ ପୁଅକୁ ରାଜାଙ୍କ କାମରେ ଲଗାଇଦେଲା। ରାଜା କଣ କଲେ ନା, ରାଣୀଙ୍କୁ ଚିଠି ଲେଖି ଦେଲେ, ''ଏ ପୁଅ ଦିନେ ଆମ କୁଳର କଳଙ୍କ ହେବ। ତେଣୁ ଯାକୁ ଦେଖୁ ଦେଖୁ ମରାଇଦେବ।'' ଚିଠିଟିକୁ ଜଉମୁଦ କରି ଏ ପୁଅ ହାତରେ ନଅରକୁ ପଠାଇଦେଲେ। କିନ୍ତୁ ଚିଠି ନେଇ ଯାଉ ଯାଉ ଏ ପୁଅ ବାଟବଣା ହୋଇଗଲା; ଗଡ଼ରେ କଣ ପହଞ୍ଚିବ, ଯାଇ ବଣରେ ପଶିଗଲା। ବଣ ଭିତରେ ବାଟ ଖୋଜୁ ଖୋଜୁ ବେଳ ବୁଡ଼ି ରାତି ହୋଇଗଲା। ଅନ୍ଧାର ରାତି। ମୁହଁକୁ ମୁହଁ ଦିଶୁନାହିଁ। ବିଚରା କରେ କଣ ଏବେ! ଗୋଟିଏ ଗଛରେ ଚଢ଼ି ଚାରିଆଡ଼କୁ ଚାହୁଁ ଚାହୁଁ ଦେଖିଲା, ଦୂରରେ ଗୋଟିଏ ଦୀପ ଜଳୁଛି। ସେଠାରେ ଲୋକବାକ ଥିବେ ଭାବି ସେ ସେଠାକୁ ଚାଲିଲା। ଯାଇ ଦେଖେ ତ ଗୋଟିଏ କୁଡ଼ିଆ ଦୁଆରେ ବୁଢ଼ୀଟିଏ ବସିଛି। ବୁଢ଼ୀ ଢୁଳେଉଛି। ଏ ପୁଅ କହିଲା, ''ଆଈ, ଓଳଗି ହେଉଛି।''

ବୁଢ଼ୀ ଆଖି ଖୋଲିଦେଇ କହିଲା, ''କୋଟି ପରମାୟୁ ପାଇଥା ରେ ନାତିଆ!''

କିନ୍ତୁ ଦୀପ ଆଲୁଅରେ ଏ ପୁଅର ରୂପ ଦେଖି କହିଲା, ''ଆହା ରେ... ତୋ ପରା ପୁଅ କାହିଁକି ଏଠିକି ଆଇଲୁ ରେ! ଏ ପୋଡ଼ାଏ ତତେ ମାରି ଖାଇଯିବେ ରେ ଧନ!''

ପୁଅ କହିଲା, ''ତୁ ମତେ କୋଟି ପରମାୟୁ ଦେଇଛୁ– ଆଉ ମତେ ଖାଇବ କିଏ ଲୋ ଆଇ? କାହାକୁ ଏତେ ଡର ଯେ?''

ବୁଢ଼ୀ କହିଲା, ''କଣ ତତେ କହିବି! ଏ କୁଡ଼ିଆ ହେଲା ପାଞ୍ଚ ଡକେଇତଙ୍କ ଆଡ୍‌ଡ଼ା। ମୁଁ ତାଙ୍କର ଆଈ। ହେଲେ ମତେ ପରା ଚାକରାଣୀ କରି ରଖିଛନ୍ତି। ସେମାନେ ତତେ ଦେଖିଲେ ଖାଲି ମାର ମାର ହେବେ। ତୁ ଏଠୁ ଶୀଘ୍ର ପଳା।''

ଏ ପୁଅ କହିଲା, ''କୁଆଡ଼େ ଆଉ ଯିବି? ଅନ୍ଧାର ରାତିରେ ବଣରେ-ପଶିଲେ ଜନ୍ତୁ ଖାଇଯିବେ। ଏଠି ରହିଲେ ଆଇଘରେ ପ୍ରାଣ ଯିବ। ତୁ ରଖିଲେ ରଖ, ମାରିଲେ ମାର।''

ଦିହେଁ ଏପରି କଥାବାର୍ତ୍ତା ହେଉଛନ୍ତି, ସେପଟୁ ପାଞ୍ଚ ଡକେଇତ ଖଣ୍ଡା କଟୁରି ଧରି ଆସିଲେ। ଆସୁ ଆସୁ ପଚାରିଲେ, ''ଏ ଟୋକା କିଏ?''

ବୁଢ଼ୀ କହିଲା, ''ଏ ବି ମୋ ନାତି ରେ ଧନ! ରାତିକ ରହି ସକାଳେ ପଳେଇବ। ଯାକୁ ମାରଧର କରନି– ମୋ କଥା ମାନ।''

ଡକେଇତମାନେ ରଉଡ଼ପୁଅକୁ ନାନା ଜେରା କରି ଯେତେବେଳେ ଶୁଣିଲେ ଯେ ସେ ରାଣୀଙ୍କ ପାଖକୁ ଚିଠିଟିଏ ନେଇ ଯାଉଛି, ସେତେବେଳେ ସେମାନଙ୍କର ସନ୍ଦେହ ବଢ଼ିଗଲା। ତା'ଠାରୁ ଚିଠିଟି ଛଡ଼ାଇନେଇ ପଢ଼ିବସିଲେ। କିନ୍ତୁ ଦେଖନ୍ତି ତ ପୁଅଟି ନିରୀହ। ଏ ପରା ପୁଅକୁ ଡାଳରେ ଚଢ଼ାଇ ରାଜା ମୂଳ କାଟିଦେବାକୁ ବସିଛି! ତେଣୁ ସେମାନେ ଆଉ ଖଣ୍ଡିଏ ଚିଠି ଲେଖି ଦେଲେ– ''ରାଣୀ, ଏ ପୁଅ ଦିନେ ଆମର କୁଳଚନ୍ଦ୍ରମା ହେବ। କାଳବିଳମ୍ବ ନ କରି ଆମ ଝିଅ ସହିତ ଏହାର ବିବାହ କରାଇଦେବ; ମୋ ପାଇଁ ଅପେକ୍ଷା କରିବ ନାହିଁ।'' ଚୋର-ଡକାୟତଙ୍କ ପାଖରେ ତ ସବୁ ଚିଜର ନକଲ ଥାଏ। ରାଜାଙ୍କ ମୋହରର ନକଲ ବି ସେମାନେ ରଖିଥାନ୍ତି। ନୂଆ ଚିଠିରେ ରାଜାଙ୍କ ନକଲି ଜଉମୁଦ ଦେଇ ସେମାନେ ପୁଅ ହାତରେ ସେଇଟି ଦେଇଦେଲେ। ତା ପରଦିନ ସକାଳୁ ସକାଳୁ ତାକୁ ନେଇ ଗଡ଼ରେ ଛାଡ଼ିଦେଇ ଆସିଲେ। ଏ ପୁଅ ଯାଇ ରାଣୀହଂସପୁରରେ ପହଞ୍ଚିଗଲା। ଯାକୁ ଯେ ଦେଖିଲା, ସେ ମୋହିହୋଇଗଲା। ରାଣୀ ଭାବିଲେ, ଏପରି ଜ୍ୱାଇଁଟିଏ ହେଲେ ଝିଅ ସୁଖରେ ରହନ୍ତା। ତହିଁକି ସେ ନକଲି ଚିଠିଟା ପଢ଼ି ଦେଉ ଦେଉ ସେ ସବୁ କଥା ଭୁଲିଗଲେ। ସଙ୍ଗେ ସଙ୍ଗେ ପୁରୋହିତଙ୍କୁ ଡକାଇ ଏ ପୁଅ ସହିତ ନିଜ ଝିଅର ବାହାଘର କରାଇଦେଲେ। ରାଜାଝିଅର ବାହାଘର। କେତେ ବାଜା, କେତେ ଭୋଜି– କଥାରେ କହିହେବ ନାହିଁ। ଏତିକିବେଳେ

ନିଜେ ରାଜା ଆସି ନଅରରେ ପହଞ୍ଚିଗଲେ। "କି ରେ କଥା କଣ? ଏ ବାଜା ଭୋଜି କାହିଁକି" ବୋଲି ବୁଝୁବୁଝୁ ଇମିତି କଥାକୁ ଇମିତି। ସେ ଗୁଡ଼ାଏ ଛି-ଛାକର ହେଲେ। ତଥାପି ତାଙ୍କ ବଡ଼େଇ ଭାଙ୍ଗିଲାନାହିଁ। କଣ କରି ଏ ପୁଅକୁ ମରେଇବେ ଭାବୁ ଭାବୁ ତାଙ୍କ ମୁଣ୍ଡରେ ଆଉ ଗୋଟିଏ ଖଳବୁଦ୍ଧି ପଶିଗଲା। ସେ କ୍ବାଇଁପୁଅକୁ ହୁକୁମ ଦେଲେ, "ବାହାଘର ହୋଇଗଲା ସତ, ସପ୍ତକନ୍ଦର ପର୍ବତରେ ଯେଉଁ ବୁଢ଼ା ଅସୁର ଅଛି, ତା ମୁଣ୍ଡରୁ ତିନିଟି ସୁନାବାଳ ନ ଆଣିବା ପର୍ଯ୍ୟନ୍ତ ତୁମେ ମୋ ଝିଅକୁ ପାଇବ ନାହିଁ।"

ଫଳରେ ସେ ପୁଅ ସପ୍ତକନ୍ଦର ପର୍ବତକୁ ଚାଲିଲା। ସେ ତ କିଛି କମ୍ ବାଟ ନୁହେଁ– ଅନେକ ଦୂର। ଯାଉ ଯାଉ ସେ ଗୋଟିଏ ନଗରରେ ପହଞ୍ଚିଲା। ନଗର ଫାଟକରେ ଯେଉଁ ସିପାହିମାନେ ଜଗିଥିଲେ, ସେମାନେ ତା ବାଟ ଓଗାଳି ପଚାରିଲେ, "ତୁମେ କି ଧନ୍ଦା ନେଇ ଏଠିକି ଆସିଛ, ସେ କଥା କହ। ତା' ପରେ ନଗର ଭିତରେ ପଶିବ।"

ଗଉଡ଼ ପୁଅ କହିଲା, "ଆହେ, ମତେ ସବୁ ଧନ୍ଦା ଆସେ। ମୋ ହାତରେ ହେବ ନାହିଁ ଏପରି ଧନ୍ଦା କାହିଁ ଜଗତରେ ନାହିଁ।"

ଏ କଥା ଶୁଣି ସିପାହିମାନେ କହିଲେ, "ଆମେ ତ ତୁମରି ପରି ଜଣେ ଲୋକ ଖୋଜୁଥିଲୁ। ଆସ ଆସ, ଆମ ନଗରପାଳଙ୍କ ପାଖକୁ ଯିବା।" ନଗରପାଳ ଏ ପୁଅକୁ ଦେଖି ପଚାରିଲେ– "ତୁମେ ତ ସବୁ ବିଦ୍ୟା ଜାଣ ବୋଲି କହୁଛ– କହିଲ ଦେଖି,' କଣ କଲେ ଆମ ନଗର ମଝିରେ ଥିବା ଝରଣାରୁ ପୁଣି ପାଣି ଝରିବ? ଆଗେ ଏଠାରୁ ପାଣି ସୁଅ ଛୁଟୁଥିଲା। କଣ ହେଲା କେଜାଣି, ଗଲା ବରଷଠାରୁ ଆଉ ଟୋପାଏ ବି ପାଣି ଝରୁନି!"

ଗଉଡ଼ ପୁଅ କହିଲା, "ଏଇଟା ସାମାନ୍ୟ କାମଟାଏ। ମୁଁ ସପ୍ତକନ୍ଦର ପର୍ବତରୁ ଫେରେ; ଗଲାବେଳେ ସଜାଡ଼ିଦେଇ ଯିବି।"

ନଗରପାଳଙ୍କଠାରୁ ବିଦାୟ ନେଇ ସେ ଚାଲିଛି। ଦିନେ ଯାଇ ସେ ଆଉ ଗୋଟାଏ ନଗରରେ ପହଞ୍ଚିଲା। ସେଠାରେ ଲୋକେ ତାକୁ ବାଟ ଓଗାଳି ପଚାରିଲେ, "ତୁମ ବିଦ୍ୟା ବୁଦ୍ଧି କଣ କହ, ନ ହେଲେ ବାଟ ଛାଡ଼ିବୁ ନାହିଁ।" ଗଉଡ଼ ପୁଅ କହିଲା, "ଆହେ, ମୁଁ ସବୁ ବିଦ୍ୟାରେ ଧୁରନ୍ଧର। କେଉଁଟା କହିବି, କେଉଁଟା ନ କହିବି?"

ଲୋକେ ତାକୁ ଡାକିନେଇ ନଗର ମଝିରେ ଥିବା ଗୋଟିଏ ଥୁଣ୍ଟା ଆତଗଛ ଦେଖାଇ ପଚାରିଲେ, "ଏ ଗଛରେ ଆଗେ ଯେଉଁ ଆତ ଫଳୁଥିଲା, ସେ ଆତ ଖଣ୍ଡମଣ୍ଡଳରେ ନାହିଁ। ଦେଖିବାକୁ ଚକ୍‌ଚକ୍, ଖାଇବାକୁ ଅମୃତ ପରି ସୁଆଦ। ସୁଗନ୍ଧରେ ଚାରିଆଡ଼ ଚହଟୁଥିଲା। ଏ ଗଛଟା ଥିଲା ଆମ ନଗରର ଗର୍ବ।

କିନ୍ତୁ ଗଲା କେତେବର୍ଷ ହେଲା କଣ ୋଇଗଲା କେଜାଣି, ଆଉ ଫଳଟିଏ ଫଳୁ ନାହିଁ କି ପତ୍ରଟିଏ କଅଁଳୁ ନାହିଁ– ଆସି ଥୁଣ୍ଟା ହୋଇଗଲା। କଣ କଲେ ଏ ଗଛରେ ପୁଣି ଥରେ ଆଗ ପରି ଫଳ ହେବ?''

ଗଉଡ଼ ପୁଅ କହିଲା, ''ଏଟା ଗୋଟେ କି କାମରେ କାମ ଯେ, ଏତେ ଧନ୍ଦି ହେଉଛ? ମୁଁ ସପ୍ତକନ୍ଦର ପର୍ବତରୁ ଫେରେ; ଫେରିଲାବେଳେ କାମଟି କରିଦେଇଯିବି।''

ନଗର ଲୋକେ ତା କଥାରେ ବିଶ୍ୱାସ ପାଇ ତାକୁ ଛାଡ଼ିଦେଲେ। ସେଠାରୁ ଯାଉ ଯାଉ ବାଟରେ ଗୋଟିଏ ଛୋଟ ହ୍ରଦ ପଡ଼ିଲା। ହ୍ରଦ ପାର କରାଇବା ଲାଗି ନାଉରିଟିଏ ଡଙ୍ଗା ନେଇ ଏ କୂଳ ସେ କୂଳ ହେଉଥାଏ। ସେ ଏକ ବିଚିତ୍ର ଡଙ୍ଗା। ପଝାରି ଥାଆନ୍ତୁ ନ ଥାଆନ୍ତୁ, ସେ ଡଙ୍ଗା ସ୍ଥିର ହୋଇ ରହେନାହିଁ; ବରାବର ଏ କୂଳରୁ ଆର କୂଳକୁ ଓ ଆର କୂଳରୁ ଏ କୂଳକୁ ଯା'ଆସ କରୁଥାଏ ଯେ, ନାଉରି ବୁଢ଼ା ଆହୁଲା ମାରି ମାରି ଥକିପଡୁଥାଏ। ଏ ପୁଅ ହ୍ରଦ ପାର ହେଉ ହେଉ ନାଉରିଆ ପଚାରିଲା, ''ହଜୁର, ଆପଣ କେଉଁ ଧନ୍ଦାରେ ଯାଉଛନ୍ତି?'' ଏ ପୁଅ କହିଲା, ''ମୁଁ ସବୁ ଧନ୍ଦାରେ ପାରଙ୍ଗମ; ମତେ ସବୁ ଆସେ।''

ନାଉରିଆ କହିଲା, ''ହେଲେ ହଜୁର! ମୋ କଥା ଟିକିଏ ବୁଝନ୍ତେ ନାହିଁ? ଆସି ପିଲାରୁ ବୁଢ଼ା ହେଲି, କିନ୍ତୁ ଦିନେହେଲେ ମୋ ହାତରୁ ଏ କାତ ବାଉଁଶ ଛାଡ଼ିଲା ନାହିଁ। ଜୀବନସାରା ଡଙ୍ଗା ବାହି ବାହି ମୁଁ ଭାରି ହଇରାଣ ହେଲିଣି। କଣ କଲେ ମତେ ଏଥିରୁ ନିସ୍ତାର ମିଳିବ, ଟିକିଏ କହିଲେ!''

ଏ ପୁଅ କହିଲା, ''ହଉ, ମୁଁ ଗୋଟିଏ ଜରୁରୀ କାମରେ ସପ୍ତକନ୍ଦର ପର୍ବତକୁ ଯାଉଛି। ସେଠାରୁ ଫେରିଲାବେଳେ ତୁମକୁ କହିଦେଇ ଯିବି।''

ହ୍ରଦ ପାର ହୋଇ କିଛି ବାଟ ଯିବା ପରେ ସପ୍ତକନ୍ଦର ପର୍ବତ ପଡ଼ିଲା। ସେ ପର୍ବତରେ ସାତଟା ବଡ଼ ବଡ଼ ଗୁମ୍ଫା। କେଉଁ ଗୁମ୍ଫାରେ ଏବେ ବୁଢ଼ା ଅସୁର ରହୁଛି, କିଏ ଜାଣେ! ଖୋଜୁ ଖୋଜୁ ସେ ଯାଇ ଦେଖିଲା, ଗୋଟିଏ ଗୁମ୍ଫାରେ ନଅରଟିଏ ତୋଳାହୋଇଛି; କିନ୍ତୁ ସେ ଭିତରଟା ଉଆଁସ ରାତିପରି ଅନ୍ଧାର, ଲୋକବାକ କେହି ଦେଖାଯାଉନଥାନ୍ତି। ସେ ଅନ୍ଧାରରେ ଦରାଣ୍ଡି ଦରାଣ୍ଡି ଚାଲିଛି, କେହି ଜଣେ ବୁଢ଼ୀ ତାକୁ ପଚାରିଦେଲା, ''କଣ ଖୋଜୁଛୁ ରେ ବାପ?''

ଏ ପୁଅ ଟିକିଏ ନିରେଖି ଚାହିଁବାରୁ ବୁଢ଼ୀକୁ ଦେଖିପାରିଲା। ତାକୁ ଓଳଗି ହୋଇ କହିଲା, ''ଆଇ, ସତ କହିବି ନା ମିଛ କହିବି?''

–''ସତ କହୁନୁ ରେ, ଏବେ ତ ଅସୁର ଘରେ ନାହିଁ– ଡରୁଛୁ କାହିଁକି?''

–''ସତ କହୁଛି ଆଇ, ମୁଁ ଧନଦରବ ଚାହୁଁନି; ଏ ଅସୁରରଜା ମୁଣ୍ଡରୁ

ତିନିଟି ସୁନେଲି ବାଳ ମୋର ଦରକାର। ମୁଣ୍ଡ କୁଣ୍ଡେଇଲାବେଳେ କେଉଁଠି ଝଡ଼ିପଡ଼ିଥିବ, ତୁ ଗୋଟାଇଥିଲେ ଦିଅନ୍ତୁନି ?''

ବୁଢ଼ୀ କହିଲା, ''ମୁଁ ହେଉଛି ଏ ଅସୁର ରାଜାର ଆଈ। ତାକୁ ପିଲାଦିନୁ ଦେଖୁଛି; ତା ମୁଣ୍ଡରୁ ବାଳ ଝଡ଼ୁନି କି ଛିଡ଼ୁନି। ତୁ ପାଇପାରିବୁ ନାହିଁ।''

ଏ ପୁଅ କହିଲା, ''କିବା କଥାରେ କଥାଟେ ଯେ, ତୁ ଇମିତି ନିରାଶ କରି ଦେଉଛୁ, କହିଲୁ ? ତୁ ଚାହିଁଲେ ତୋ ନାତି ମୁଣ୍ଡରୁ ତିନିଟି ବାଳ ଛିଣ୍ଡାଇ ପାରିବୁ ନାହିଁ ?''

ବୁଢ଼ୀ କହିଲା, ''କିନ୍ତୁ ବଡ଼ ବିପଦ କଥା। ସେ ଯଦି ଜାଣିଦେବ, ତେବେ ତୋ ହାଡ଼ଗୋଡ଼ ଚୂନା କରିଦେବ। ମୁଁ ତତେ ଗୋଟିଏ ପିମ୍ପୁଡ଼ି କରିଦେଉଛି। ତୁ ଏ କାନ୍ଥର ଫାଟରେ ଲୁଚି ଯା; ମୁଁ ମୋ କଲା କାମ କରିବି।''

ଏ ପୁଅ କହିଲା, ''ଧନ୍ୟ, ଧନ୍ୟ ଲୋ ଆଈ! ଏତକ ତ କରିବୁ, ବାକି ତିନିଟା କଥା ଅସୁରକୁ ପଚାରି ବୁଝିଥିବୁ। ସେ ତ ସର୍ବଜ୍ଞ ଅସୁର, ନିଶ୍ଚୟ ଜାଣିଥିବ, କହିବ।'' ତା ପରେ ସେ ବୁଢ଼ୀକୁ ସେଇ ଦୁଇ ନଗରପାଳଙ୍କ ପ୍ରଶ୍ନ ଓ ନାଉରିଆର ପ୍ରଶ୍ନ କହିଦେଲା। ଏଥର ବୁଢ଼ୀ ତାକୁ ପିମ୍ପୁଡ଼ି କରିଦେଇ ଅସୁରର ଫେରିବା ବାଟକୁ ଚାହିଁରହିଲା। ଦିନ ଯାଇ ରାତି ହେଉ ହେଉ ଅସୁର ତାର ଚରିବୁଲି ଫେରିଲା। କିନ୍ତୁ ଫେରୁ ଫେରୁ ବୁଢ଼ୀକୁ କହିଲା, ''କି ଆଶ୍ଚର୍ଯ୍ୟ କଥା, ଆଜି କଣ ନଅରଟା ଖାଲି ନର ନର ଗନ୍ଧେଉଛି !''

ବୁଢ଼ୀ ହସିଦେଇ କହିଲା, ''ଆରେ, ଆମ ଏଠିକି ନର ଆସିବେ କେଉଁଠୁ ? ପେଟ ପୂରାଇ ଖାଇନୁ ଯେ, ତତେ ସିମିତି ଲାଗୁଛି। ଆସ, ମୁଁ ରାନ୍ଧିବାଢ଼ି ରଖିଛି, ଖାଇଦେବୁ ଯେ ଆରାମରେ ଶୋଇବୁ।''

ଅସୁର ଶଗଡ଼େ ରୁଟି ଓ ହଣ୍ଡେ ତରକାରି ଖାଇ ଘୁଙ୍ଗୁଡ଼ି ମାରି ଶୋଇପଡ଼ିଲା। ତା ନିଦ ଟିକିଏ ଗଭୀର ହୋଇଯିବାରୁ ବୁଢ଼ୀ ତା ମୁଣ୍ଡରୁ ଚଟ୍ କରି ଗୋଟିଏ ବାଳ ଛିଣ୍ଡାଇଦେଲା। ଅସୁର ''ଉସ୍, ଇଏ କଣ କରୁଛୁ ?'' କହି ପାଟି କରିବାକୁ ଲାଗିଲା। ବୁଢ଼ୀ ବାଳଟି ଲୁଚାଇ ଦେଇ କହିଲା, ''କାହିଁ ମ! କେଉଁଠି କଣ କଲି ରେ, ଇମିତି ପାଟି କରି ମୋ ନିଦ ଭାଙ୍ଗିଦେଲୁ ? ଆରେ, ମୁଁ ସପନରେ କଣ ନାହିଁ କଣ ଦେଖି ହାତ ହଲାଇ ଦେଇଥିବି ଯେ ମୋ ନଖ ବାଜି ଯାଇଥିବ, ଶୋଇପଡ଼।'' କିନ୍ତୁ ଅସୁର ଶୋଉ ଶୋଉ ବୁଢ଼ୀ ପଚାରିଲା, ''ଶୋଇପଡ଼ିଲୁ କି ରେ ? ମୁଁ ସପନରେ ଦେଖୁଛି ଗୋଟିଏ ନଗରରେ ଝରଣାଟିଏ ଥିଲା ଯେ ସେଥିରୁ କି ସୁନ୍ଦର ପାଣି ଝରୁଥିଲା। ହଠାତ୍ କଣ ହେଲା କେଜାଣି, ଝରଣାଟା ଶୁଖିଗଲା। ଲୋକେ ପାଣି ପାଇଁ କଳି କରୁଛନ୍ତି। ହଇରେ ହଇରେ, କଣ ଇମିତି ଘଟୁଛି ?''

ଅସୁର ଶୋଇଶୋଇକା କହିଲା, "ଘଟୁଛି କଣ, ଘଟିଛି।"

ବୁଢ଼ୀ ପଚାରିଲା, "ସତେ! ତା' ହେଲେ କଣ କଲେ ସେଥିରୁ ପୁଣି ଥରେ ପାଣି ଝରିବ?"

ଅସୁର କହିଲା, "ଆଲୋ, ସେ ଝରଣା ତଳେ ଗୋଟିଏ ପଥର ଅଛି। ସେ ପଥରତଳେ ଗୋଟିଏ ବେଙ୍ଗ ବସି ସବୁ ପାଣି ପିଇଯାଉଛି। ଯଦି ସେ ଲୋକେ ବେଙ୍ଗଟିକୁ ମାରିଦେବେ, ତେବେ ପୁଣି ଥରେ ଆଗପରି ପାଣି ଝରିବ।"

"ଓଃ! ଇମିତି କଥା, ନୁହ??" —କହି ବୁଢ଼ୀ ଶୋଇବା ବାହାନା କଲା। ଅସୁର ବି ଘୁଙ୍ଗୁଡ଼ି ମାରି ଶୋଇଲା। କିଛି ସମୟ ପରେ ବୁଢ଼ୀ ପୁଣି ଥରେ ବାଳଟିଏ ଛିଣ୍ଡାଇ ଆଣିଲା। ଏଥର ଅସୁର ଜୋର୍‌ରେ ପାଟିକରି ବୁଢ଼ୀକୁ ଗୋଟିଏ କରକୁ ଠେଲିଦେଲା। ବୁଢ଼ୀ କିଛି ନ ଜାଣିଲା ପରି କହିଲା, "ଆଜି ତ ମୁଁ କାହିଁକି ଖାଲି କଳି ସପନ ଦେଖୁଛି; ନିଦବାଉଳାରେ ହାତ ବାଜିଯାଉଛି।" ଅସୁର ଗୁଡ଼ାଏ ବିରକ୍ତ ହୋଇ ଶୋଇପଡ଼ିଲା।

କିନ୍ତୁ ବୁଢ଼ୀ ପଚାରିଲା, "କିରେ ଶୋଇ ପଡ଼ିଲୁ କି? —ଶୁଣ, ମୁଁ ଏଥର ସପନ ଦେଖିଲି ଯେ ଗୋଟିଏ ଆତଗଛରେ କି ସୁନ୍ଦର ଆତ ଫଳୁଥିଲା। କିନ୍ତୁ କଣ ହେଲା କେଜାଣି, ସେ ଗଛରେ ଆଉ ଫଳ ଆସିଲା ନାହିଁ। ଗଛଟା ଥୁଣ୍ଟା ହୋଇଗଲା। ସେଠା ଲୋକଗୁଡ଼ାକ ଏ ଅବସ୍ଥା ଦେଖି ଇଏ ତାକୁ, ସିଏ ଆକୁ ଦୋଷ ଦେଇ କଳିକରୁଛନ୍ତି ଯେ, କାନରେ ଶୁଣିବା କଥା ନୁହେଁ। ଆଚ୍ଛା, ତୁ କହିଲୁ, କଣ କଲେ ଏପରି ଗଛରେ ପୁଣି ଥରେ ଫଳ ଫଳିବ।"

ଅସୁର କହିଲା, "ସେ ଗଛମୂଳେ ଗୋଟିଏ ମୂଷା ଘର କରିଛି। ସେ ତ ଚେରଟିଏ ବଢ଼ିଲା ମାତ୍ରେ କାଟିଦେଉଛି। ଗଛ ଆଉ ଉଧେଇବ କଣ ଯେ ଫୁଲ କଷି ଧରିବ। ସେ ମୂଷା ମଲେ, ସେ ଗଛ ବଢ଼ିବ।"

ବୁଢ଼ୀ କହିଲା, "କଥା ଯାଇ ସେଇଠି! ହଉ, ଶୋଇପଡ଼।" ଅସୁର ପୁଣି ଥରେ ଘୁଙ୍ଗୁଡ଼ି ମାରି ଶୋଇଛି, ବୁଢ଼ୀ ଚଟ୍‌କରି ତା ମୁଣ୍ଡରୁ ଆଉ ଏକ ବାଳ ଛିଣ୍ଡାଇଦେଲା। ଅସୁର "ଧେତ୍‌ତେରୀ" କହି ଚାପୁଡ଼ାଏ ମାରିଲା ଯେ ସେଥିରେ ନଅର କମ୍ପିଗଲା। ରକ୍ଷା ହୋଇଛି, ଚାପୁଡ଼ାଟା ବୁଢ଼ୀ ଦେହରେ ନ ବାଜି ଘର ଚଟାଣରେ ବାଜିଗଲା; ନହେଲେ ବୁଢ଼ୀ ସେଇଠି ଖତମ୍ ହୋଇଯାଇଥାନ୍ତା। ଅସୁରର ରାଗ ଦେଖି ବୁଢ଼ୀ କହିଲା, "ନାହିଁ ନାହିଁ, ମୁଁ ଦୂରକୁ ଘୁଞ୍ଚିଯାଉଛି, ତୁ ତୋର ଆରାମରେ ଶୁଅ। ପୋଡ଼ା ସପନ ପରା ଜମା ଛାଡୁନି। ଏଥର କି ସପନ ଦେଖିଲି, ଶୁଣିବୁ କି? ଦେଖିଲି ଗୋଟିଏ ବଡ଼ ହ୍ରଦ। ଗୋଟିଏ ନାଉରି ବୁଢ଼ା କେତେ କାଳୁ କେଜାଣି ଡଙ୍ଗା ବାହି ଲୋକ ପାର କରୁଛି; ତା ହାତରୁ ସେ ଆହୁଲା ବାଡ଼ି ଜମା ଛାଡୁନାହିଁ। ବୁଢ଼ା ଡହଳବିକଳ ହୋଇ

ଟଙ୍ଗା ବାହୁଛି। ଆଚ୍ଛା, କଣ କଲେ ସେ ବୁଢ଼ା ସେଥିରୁ ନିସ୍ତାର ପାଇବ କିରେ?''

ଅସୁର କହିଲା, ''ସେ ଯଦି କଦର କରି ଆଉ କେଉଁ ପଞ୍ଝାରି ହାତକୁ ଆହୁଲା ବାଡ଼ିଟି ଦେଇଦେବ, ତେବେ ସେଥିରୁ ନିସ୍ତାର ପାଇବ।''

''ଠିକ୍ ଠିକ୍, ଦେ ଶୋଇପଡ଼। ମୁଁ ଏଥର ବୂରକୁ ଘୁଞ୍ଚିଯାଉଛି'' —କହି ବୁଢ଼ୀ ଦୂରକୁ ଘୁଞ୍ଚିଗଲା। ଅସୁର ତାର ଚାରିକାତ ମେଲାଇ ଘୁଙ୍ଗୁଡ଼ି ମାରି ଶୋଇଲା। ଏଣେ ରଉଡ଼ ପୁଅ ପିମ୍ପୁଡ଼ି ରୂପରେ କାନ୍ଥ ଫାଟ ଭିତରେ ରହି ସବୁ ଶୁଣୁଥାଏ। ରାତି ପାହାନ୍ତିଆ ହେବା ପୂର୍ବରୁ ବୁଢ଼ୀ ତାକୁ ମଣିଷ କରିଦେଇ ଅସୁର ମୁଣ୍ଡରୁ ଛିଣ୍ଡାଇଥିବା ବାଳ ତିନିଖିଅ ଦେଇ ବିଦାକରିଦେଲା। ସେ ପୁଅ ବୁଢ଼ୀକୁ ମୁଣ୍ଡିଆ ମାରି ଯେତେ ଶୀଘ୍ର ପାରେ ସପ୍ତକନ୍ଦର ପର୍ବତରୁ ପଳାଇଆସିଲା। ଫେରିବା ବାଟରେ ପ୍ରଥମେ ଭେଟିଲା ସେହି ନାଉରିକୁ। ଦେଖୁ ଦେଖୁ ନାଉରି ବୁଢ଼ା ଚିହ୍ନିପାରି କହିଲା, ''କଣ ହଜୁର, ମୋ କଥା କଣ ବିଚାର କଲେ?''

ଏ ପୁଅ କହିଲା, ''ତୁ ଆଗ ଟଙ୍ଗା ବାହା, ମୁଁ ଓହ୍ଲାଇଲାବେଳେ କହିଦେବି।'' ବୁଢ଼ା ଟଙ୍ଗା ବାହି ଆର କୂଳରେ ଲଗାଇ ଦେଉ ଦେଉ ଏ ପୁଅ କୂଳକୁ ଡେଇଁପଡ଼ି କହିଲା, ''ତୁ ଏଥିରୁ କିପରି ନିସ୍ତାର ପାଇବୁ ଶୁଣ। ଟିକିଏ କଦର କରି କେହି ଏକାଟିଆ ପଞ୍ଝାରିକୁ ଆହୁଲା ବାଡ଼ିଟି ଧରାଇଦେଲେ, ସେ ଆହୁଲା ଧରିଥିବ, ତୁ ଓହ୍ଲାଇପଡ଼ିବୁ—ବୁଝିଲୁ।''

ବୁଢ଼ା ତା ବୁଦ୍ଧିକୁ ଧନ୍ୟ ଧନ୍ୟ କହି ଆଉ କିଏ ପଞ୍ଝାରି ଆସିବ ବୋଲି ଛକିବସିଲା। ଏ ପୁଅ ସେଠାରୁ ବିଦାହୋଇ ଆସି ଥୁଣ୍ଟା ଆତଗଛ ଥିବା ନଗରରେ ପହଞ୍ଚିଗଲା। ନଗରର ଲୋକେ ତାକୁ ଘେରିଯାଇ 'କି ଉପାୟ କଲେ ଆତଗଛରେ ପୁଣି ଥରେ ଆତ ଫଳିବ' ବୋଲି ପଚାରିଲେ। ସେ କହିଲା, ''ଗଛ ମୂଳଟାକୁ ଟିକିଏ ସାବଧାନରେ ଖୋଳ। ଦେଖିବ, ତଳେ ଗୋଟିଏ ମସ୍ତବଡ଼ ମୂଷା ଘର କରି ଗଛର ଚେରଗୁଡ଼ାକ କାଟିପକାଉଛି। ସେ ମୂଷାଟାକୁ ମାରିଦିଅ; ନହେଲେ ଆଉ କିଛି ଦିନ ଭିତରେ ସେ ସବୁ ଚେର କାଟିଦେବ ଯେ ଗଛରେ ଫଳ କଣ ଫଳିବ, ଗଛଟା ଜାଳକାଠକୁ ଯୋଗ୍ୟ ହେବ ନାହିଁ।''

ଲୋକେ ତାକୁ ଅଟକାଇରଖି ଗଛ ମୂଳ ଖୋଳିଲେ। ସତକୁସତ ସେ ଭିତରେ ମୂଷା ଘର କରି ଚେର କାଟୁଛି। ଲୋକେ ମୂଷାକୁ ମାରି ଏ ପୁଅକୁ ନାନା ଧନରତ୍ନ ଉପହାର ଦେଇ ବିଦାୟ କଲେ। ସେଠାରୁ ଚାଲି ଆସୁ ଆସୁ ସେ ପ୍ରଥମ ନଗରରେ ପହଞ୍ଚିଗଲା। ସେଠାରେ ଦ୍ୱାରପାଳମାନେ ତା ବାଟକୁ ଚାହିଁବସିଥାନ୍ତି। ସେମାନେ ତା' ବାଟ ଓଗାଳି ପଚାରିଲେ, ''କଣ କଲେ ଆମ ଝରଣାରୁ ପୁଣି ଥରେ ପାଣି ଝରିବ, କହ?'' ଏ ପୁଅ କହିଲା, ''ତୁମ ଝରଣା ତଳେ ତ ଶତ୍ରୁ ବସିଛି; ତାକୁ ନମାରିଲାଯାଏ ପାଣି ଝରିବନାହିଁ।''

ସେମାନେ ପଚାରିଲେ, "ଶତ୍ରୁ କିଏ ?" ଏ କହିଲା, "ଝରଣା ତଳ ପଥରଗୁଡ଼ାକ ଆଡ଼ାଅ; ଦେଖିବ, ସେ ଭିତରେ ଏକ ମସ୍ତବଡ଼ ବେଙ୍ଗ ବସିଛି। ଯେତେ ପାଣି ଝରୁଛି, ସେ ବେଙ୍ଗ ସବୁ ପିଇଯାଉଛି। ତାକୁ ମାର; ପାଣି ଝରିବ।"

ଲୋକେ ସଙ୍ଗେ ସଙ୍ଗେ କାମରେ ଲାଗିଗଲେ। ପଥର ଆଡ଼େଇ ଆଡ଼େଇ ବେଙ୍ଗଟା ବାହାରିପଡ଼ିଲା। ଲୋକେ କି ଆଉ ତାକୁ ରଖନ୍ତି! ବେଙ୍ଗଟାକୁ ମାରି ବାହାର କରି ଦେଉ ଦେଉ ଝରଣାରୁ ଝର ଝର ହୋଇ ପାଣି ଝରିବାକୁ ଲାଗିଲା; ଏଥର ଦେଖ ସେ ଲୋକଙ୍କର ଖୁସି। ଏ ପୁଅକୁ ଦିଅଁଦେବତା ପରି ପୂଜା-ଆରାଧନା କରି ନାନା ଉପହାର ସାମଗ୍ରୀ ଦେଇ ବିଦାୟ କଲେ। ଏ ସବୁ ଧନରତ୍ନ ଧରି ସେ ଯେତେବେଳେ ଆସି ତା ଶ୍ୱଶୁରଙ୍କ ନଅରରେ ପହଞ୍ଚିଗଲା; ସେତେବେଳେ ରାଜା ପଚାରିଲେ – "ମୁଁ ଯେଉଁ ପଦାର୍ଥ କହିଥିଲି, ତାହା ଆଣିଛୁଟି ?"

ଏ ପୁଅ ସମସ୍ତଙ୍କ ଆଗରେ ସେହି ସୁନାବାଳ ତିନିଟି ରାଜାଙ୍କୁ ଦେଇଦେଲା। ଲୋକେ ଧନ୍ୟ ଧନ୍ୟ କହିଲେ। ସମସ୍ତେ କହିଲେ, "ଏ ହିଁ ଆମ ଦେଶର ଯୁବରାଜ।" ରାଜା ଲୋକଙ୍କ କଥା ଅନ୍ୟଥା କରି ପାରିଲେ ନାହିଁ ସତ, ହେଲେ ତାଙ୍କ ମନକୁ ଆହୁରି ଏକ ପାପଚିନ୍ତା ଛୁଇଁଲା। ସେ ଭାବିଲେ, 'ଯା ପରା ଗଉଡ଼ଟୋକା ଯେତେବେଳେ ସେ ଅସୁର ମୁଣ୍ଡରୁ ତିନିଟା ସୁନା ବାଳ ଛିଣ୍ଡାଇ ଆଣିପାରିଲା, ମୁଁ କ୍ଷତ୍ରିୟ ପୁଅ ହୋଇ କାହିଁକି ତା ମୁଣ୍ଡକଯାକ ବାଳ ଛିଣ୍ଡାଇ ନ ଆଣିବି!' ଏପରି ଭାବି ସେ ଝିଅ ଜ୍ୱାଇଁଙ୍କ ହାତରେ ରାଜ୍ୟଭାର ଦେଇ ନିଜେ ସପ୍ତକନ୍ଦର ପର୍ବତକୁ ବାହାରିପଡ଼ିଲେ।

ଅନେକ ଦିନ ଚାଲିବା ପରେ ରାଜା ଯାଇ ସେହି ହ୍ରଦକୂଳରେ ପହଞ୍ଚିଗଲେ। ଦୁର୍ଯୋଗକୁ କଣ ହୋଇଥାଏ ନା, ସେ ପୁଅ ହ୍ରଦ ପାର ହେବା ଦିନୁ ଆଉ କେହି ପଝାରି ହ୍ରଦ ପାର ହେବାକୁ ଆସି ନ ଥାନ୍ତି। ଡଙ୍ଗା ବାହିବା କାମରୁ କେତେବେଳେ ନିସ୍ତାର ମିଳିବ ବୋଲି ବୁଢ଼ା ନାଉରି ମଉକା ଖୋଜି ବସିଥାଏ। ରାଜା ଡଙ୍ଗାରେ ବସୁ ବସୁ ନାଉରି ବୁଢ଼ା ଖୁସି ହୋଇଗଲା। ଡଙ୍ଗା କୂଳ ଛାଡ଼ିବାକୁ ଯାଉଛି, ବୁଢ଼ା କହିଲା, "ହଜୁର, ଟିକିଏ ଆହୁଲାଟା ଧରନ୍ତେ ନାହିଁ, ମୋ ପିଠିଟା କୁଣ୍ଡାଇ ହେଉଛି, ମୁଁ ଟିକିଏ କୁଣ୍ଡାଇଦିଅନ୍ତି।"

ରାଜା ତ ଆଉ ସାରୁ ଭିତରେ ମାରୁ ଅଛି ବୋଲି ଜାଣନ୍ତି ନାହିଁ, ସେ ଆହୁଲାଟି ଧରିପକାଇଲେ। ସଙ୍ଗେ ସଙ୍ଗେ ବୁଢ଼ା ନାଉରି ଡଙ୍ଗାରୁ ଡେଇଁ ପଳାଇଗଲା। ରାଜା ଆବାକାବା ହୋଇ ଚାହିଁଛନ୍ତି, ଡଙ୍ଗାଟା ହ୍ରଦ ଭିତରକୁ ମୁହାଁଇଲା। ସେ ବାଧହୋଇ ଆହୁଲା ପକାଇଲେ ଏବଂ ସେହିଦିନୁ ସେ ଆହୁଲା ପକାଇ ଚାଲିଛନ୍ତି ଯେ ଚାଲିଛନ୍ତି। ତାଙ୍କର ଆଉ ସେ ଆଗର ବଢ଼ିମା ନାହିଁ।

—

# ପାଲଟା କନିଆଁ

ଜଣେ ବୁଢ଼ୀ ରାଣୀ ଥାଆନ୍ତି ଯେ, ବିଧବା ହୋଇଯିବା ଦିନୁ ସେ ହିଁ ରାଜ୍ୟ ପାଳୁଥିଲେ। ତାଙ୍କର ଗୋଟିଏ ବୋଲି ଝିଅ। ସେ ଝିଅଟି କିନ୍ତୁ ଭାରି ସୁନ୍ଦରୀ। ବୁଢ଼ା ରାଜା ଥିଲାବେଳେ ସେ ଝିଅକୁ ଆଉ ଗୋଟିଏ ଦେଶର ରାଜାପୁଅ ବାହା ହେବେ ବୋଲି ନିର୍ବନ୍ଧ ସରିଥିଲା। ଏବେ ଝିଅଟିର ବାହା ବୟସ ହୋଇଯିବାରୁ ମାଆ କହିଲେ, "ମାଆ ଲୋ, ବାପା ତ ମଲେ; ତତେ ଆଉ ସ୍ୱାମୀ ଘରକୁ ପଠାଇବ କିଏ ? ମୁଁ ତ ଗରିବ ହେଲିଣି, ତତେ ବା କିପରି ପଠାଇବି ? ତୁ ଯଦି ପାରିବୁ ଆପେ ଆପେ ଯା, ତୋ ସାଙ୍ଗରେ ମୁଁ ଚାଲାଖଚତୁରୀ ଦାସୀଟିଏ ପଠାଇଦେବି ଯେ ବାଟରେ ଅସୁବିଧା ହେବନାହିଁ ?"

ଝିଅ ଆଉ କଣ କରିବ, ସ୍ୱାମୀଘରକୁ ଯିବାକୁ ବାହାରିଲା। ମାଆ ବୁଢ଼ୀ ନିଜ ବଳକୁ ଚାହିଁ ଝିଅକୁ ଆୟଅଳଙ୍କାର ଓ ଲୁଗାପଟା ଦେଇ ଘୋଡ଼ାରେ ବସାଇଦେଲେ। ରାଜାଝିଅ ସେ ଘୋଡ଼ାଟି ପିଲାଦିନୁ ପାଳିଥିଲା; ସେ ଘୋଡ଼ାଟିର ନାମ ଫାଲଡ଼ା। ସେ ମଣିଷ ପରି କଥା କହେ, ଦୁଃଖ କଷ୍ଟ ବୁଝେ। ଦାସୀଟି ଆଉ ଗୋଟିଏ ଘୋଡ଼ାରେ ବସିଲା। ଘରୁ ଝିଅ ବିଦାକରିବା ପୂର୍ବରୁ ବୁଢ଼ୀ ରାଣୀ ଝିଅକୁ ଭିତରକୁ ଡାକିନେଇ କହିଲେ, "ମୋ ମୁଣ୍ଡର ବାଳ କେରାଏ ସାଙ୍ଗରେ ରଖିଥା, ବିପଦ-ଆପଦରେ ତୋର ସାହା ହେବ।" ଏପରି କହି ସେ ନିଜ ମୁଣ୍ଡରୁ କେରାଏ ବାଳ କାଟି ଝିଅ ହାତରେ ଦେଲେ। ଝିଅ ସେ କେରାକ ବାଳ ନିଜ କାଞ୍ଚୁଲି ଭିତରେ ଲୁଚାଇରଖି ଘୋଡ଼ାରେ ବସିପଡ଼ିଲା। କିନ୍ତୁ ଏ କଥା ସେ ଦାସୀ ନଜରରେ ପଡ଼ିଗଲା।

ଦାସୀ ଓ ରଜାଝିଅ ଘୋଡ଼ା ଚଳାଇ ଯାଉ ଯାଉ ଖରା ବଢ଼ିଲା। ରଜାଝିଅ ସୁକୁମାରୀ, ସେ ଖରାତରା ସହି ନ ଥାଏ। ତେଣୁ ତାକୁ ଶୋଷ ହେଲା। ଗୋଟିଏ ନାଳ ପଡ଼ିବାରୁ ସେ ଦାସୀକୁ କହିଲା, "ଆଲୋ, ମୋ ସୁନାଗିଲାସ ନେଇ ସେ ନାଳରୁ ପାଣି ଗିଲାସେ ଆଣ; ମତେ ଶୋଷ ହେଲାଣି, ପିଇବି।"

ଦାସୀଟା ମୁଖରାଟାଏ। ତାର ଭାରି କୁଟୀଳ ବୁଦ୍ଧି। ସେ କହିଲା, "ଶୋଷ କରୁଛି ତ ନିଜେ ଯାଇ ପାଣି ପିଇ ଆସ। ମୁଁ ତୋର ଦାସୀ ହେବି ନାହିଁ କି ଏତେ ବୋଲହାକ କରିବି ନାହିଁ।"

କଥାଟା ରଜାଝିଅକୁ ଭାରି ବାଧିଲା। କିନ୍ତୁ ଉପାୟ କଣ ? ସେ ତ ଏକାଟିଆ। କଳିଗୋଳ କଲେ ଲାଭ ବଦଳରେ କ୍ଷତି ହେବ ଜାଣି ସେ ଘୋଡ଼ାରୁ ଓହ୍ଲାଇପଡ଼ି

ପାଣି ପିଇବ ବୋଲି ନାଳ ପାଖକୁ ଗଲା। ସୁନା ଗିଲାସ ଆଉ କାଢ଼ିବାକୁ ତାର ସାହସ ପାଇଲା ନାହିଁ। ଝରଣା କୂଳରେ ବସି ଚକା ଚକା କରି ପାଣି ପିଉ ପିଉ କହିଲା –

"ହାୟ ରେ ମୋ କପାଳ ଫଟା !
ସତରେ ନ ହେବି କି ହଟହଟା !!"

କାଞ୍ଚୁଲି ଭିତରେ ଥାଇ ବାଳ କେରାକ କହିଲା –

"ତୁମେ ଏପରି ଦୁଃଖରେ ସଢ଼ିଲେ
ତୁମ ମାଆଙ୍କ କାନରେ ପଡ଼ିଲେ;
ତାଙ୍କ ଛାତି ହୋଇଯିବ ବିଦାରି
ହାୟ ହାୟ ରାଜକୁମାରୀ !!"

କିନ୍ତୁ ରଜାଝିଅ ଏଡ଼େ ଧୀରସ୍ଥିର, ଏଡ଼େ ନରମ ଯେ ସେ ଦାସୀକୁ କିଛି ନ କହି ଯାଇ ପୁଣି ଥରେ ଘୋଡ଼ାରେ ବସିପଡ଼ିଲା। ଆଉ କିଛି ବାଟ ଚାଲିବା ପରେ ଖରାତାତିରେ ରଜାଝିଅକୁ ପୁଣି ଥରେ ଶୋଷ ହେଲା। ଗୋଟିଏ ନଈ ପଡ଼ିଲା ଦେଖି ସେ ଦାସୀକୁ କହିଲା – "ଆଲୋ, ଏ ନଈରୁ ମୋ ସୁନା ଗିଲାସରେ ଗିଲାସେ ପାଣି ଆଣି ଦେ, ମୁଁ ପିଇବି।"

ଦାସୀ ମୁହଁ ଫଣଫଣ କରି କହିଲା – "କହିଲି ପରା, ମୁଁ ତୋର ଏତେ ବରାଦ ତୁଲେଇ ପାରିବି ନାହିଁ କି ପୋଇଲୀ ହେବି ନାହିଁ। ଯାହାକୁ ଶୋଷ କରୁଚି, ସେ ଯାଇ ପାଣି ପିଇ ଆସୁ।"

ଶୋଷ ତ କରୁଛି। ଆଉ ଉପାୟ ନ ଦେଖି ରଜାଝିଅ ଘୋଡ଼ାରୁ ଓହ୍ଲାଇ ନଈକୂଳକୁ ଚାଲିଲା। ପାଣି ଧାରରେ ବସି ସେ କହିଲା –

"ହାୟ ରେ ମୋ କପାଳ ଫଟା !
ସତରେ ନ ହେବି କି ହଟହଟା !!"

ଏକଥା ଶୁଣି କାଞ୍ଚୁଲି ଭିତରେ ଥାଇ ବାଳ କେରାକ କହିଲା –

"ତୁମେ ଏପରି ଦୁଃଖରେ ସଢ଼ିଲେ
ତୁମ ମାଆଙ୍କ କାନରେ ପଡ଼ିଲେ;
ତାଙ୍କ ଛାତି ହୋଇଯିବ ବିଦାରି
ହାୟ ହାୟ ରାଜକୁମାରୀ !!"

ରଜାଝିଅ ଆଖିରୁ ଲୁହ ପୋଛି ମୁଣ୍ଡ ନୁଆଇଁ ପାଣି ପିଉ ପିଉ ସେ ବାଳକେରାକ କାଞ୍ଚୁଲିରୁ ଖସିପଡ଼ିଲା ଯେ ପାଣିସୁଅରେ ଭାସିଗଲା। ଦାସୀ ତ ଅନାଇଁଥାଏ – ସେ ଏ କଥା ଦେଖି ମନେ ମନେ ଖୁସି ହୋଇଗଲା। ଭାବିଲା,

ଏଥର ଝିଅର ସବୁ ବଳ ଭାଙ୍ଗିଗଲା; ଏଇ ମଉକାରେ ଝିଅକୁ ପାଠ ଶିଖାଇଦେବି। ଏପରି ଭାବି ସେ ନିଜ ଘୋଡ଼ାରୁ ଓହ୍ଲାଇଆସି ରଜାଝିଅର କଥାକୁହା ଫାଲଡ଼ା ଘୋଡ଼ାରେ ବସିପଡ଼ିଲା। ରଜାଝିଅ ସଡ଼କକୁ ଫେରି ଦେଖେ ତ ତା ଘୋଡ଼ାରେ ଦାସୀ ବସିଛି। ଆପତ୍ତି କଲାରୁ ଦାସୀ କହିଲା, ''ଯଦି ବାଟବଣା ନ ହୋଇ ବରଘରକୁ ଯିବାର ଇଚ୍ଛା, ତେବେ ସେ ଘୋଡ଼ାରେ ବସି ମୋ ପଛେ ପଛେ ଆସ; ନ ହେଲେ ଅବସ୍ଥା ଗାଆଣ ଗାଇଲେ ସରିବ ନାହିଁ।''

ରଜାଝିଅର ଆଉ କୁ କେତେ! ଭାଗ୍ୟ ଆଦରି ଦାସୀର ଘୋଡ଼ାରେ ବସିଲା। ବାଟରେ ଯାଉ ଯାଉ ସେ ଦାସୀ ରଜାଝିଅକୁ ନାନା ପ୍ରକାର ଡରାଇଥରାଇ ତା'ଠାରୁ ଲୁଗାପଟା, ଆଉଅଳଙ୍କାର ସବୁ ଛଡ଼ାଇନେଇ ନିଜେ ପିନ୍ଧିପକାଇଲା। ଏଥର ସେ ଦାସୀଟି ନୂଆବୋହୂ ପରି ଦେଖାଗଲା ଓ ରଜାଝିଅ ତା ଦାସୀ ପରି ଦେଖାଗଲା। ଏପରି ଚାଲୁ ଚାଲୁ ଦିହେଁ ଆସି ରଜାଝିଅର ସ୍ୱାମୀଘର ନଅରରେ ପହଞ୍ଚିଗଲେ। ନଅର ଭିତରକୁ ଖବର ଯାଉ ଯାଉ ରଜାପୁଅ ଧାଇଁଆସିଲା। ସେ ଦାସୀଟିକୁ ଦେଖି ଭାବିଲା, ସେ ହିଁ ତା' କନିଅାଁ। ତେଣୁ ତାକୁ ଅନ୍ତଃପୁରକୁ ନେଇଯାଇ ଅସଲ ରଜାଝିଅକୁ ଦାସୀଙ୍କ ମେଳରେ ଛାଡ଼ିଦେଇଗଲା। ଏଣେ କଣ ହୋଇଥାଏ ନା, ବୁଢ଼ା ରଜା ଦୋତାଲା ଉପର ଝରକା ପାଖରେ ବସି ଏ ଦୁହିଁଙ୍କୁ ଚାହିଁଥାନ୍ତି। ଅସଲ ଦାସୀ ତ ପାଲଟା କନିଅାଁ ହୋଇ ଅନ୍ତଃପୁରକୁ ଚାଲିଗଲା। ରଜାଝିଅ ଦାସୀଙ୍କ ପାଖରେ ଠିଆହୋଇଛି ଦେଖି ବୁଢ଼ାରଜା ତାକୁ ଡକାଇ ପଠାଇଲେ। ସେ କିଏ, ଘର କେଉଁଠି ଇତ୍ୟାଦି ପଚାରିଲେ। କିନ୍ତୁ ତା ଆଖିରୁ ଖାଲି ଲୁହ ଝରିଲା; ପାଟିରୁ କଥା ବାହାରିଲା ନାହିଁ। ବୁଢ଼ାରଜା ଶେଷକୁ ନୂଆବୋହୂକୁ ଡକାଇ ପଚାରିଲେ, ''ଏ ସୁନ୍ଦରୀ ଝିଅଟି କିଏ? ତୁମ ସାଙ୍ଗରେ ଆସିଥିଲାଟି?''

ପାଲଟା କନିଅାଁ କହିଲା, ''ସେଇଟା ମୋ ଦାସୀ। କିନ୍ତୁ ଭାରି ମନମୋଟୀଟେ। ତାକୁ କିଛି କାମଦାମରେ ଲଗାଇଦିଅନ୍ତୁ, ନ ହେଲେ ଖାଲି ହାଇ ଅଳସ ଭାଙ୍ଗି ଶୋଇବ।''

ବୁଢ଼ାରଜା ତ ଏତେ କଥା ଜାଣନ୍ତି ନାହିଁ, ସେ ରଜାଝିଅକୁ କହିଲେ, ''ଆଲୋ ଝିଅ, ତୁ କାଲିଠୁ ଆମର ବତକ ଚରାଇବୁ। ଆମର ପଲେ ବତକ ଅଛନ୍ତି। କୋନାଡ୍ ବୋଲି ଗୋଟିଏ ଟୋକା ବତକ ଚରାଇ ନେଉଛି। କାଲି ସକାଳୁ ତୁ ତା'ରି ସଙ୍ଗରେ ଯିବୁ।''

ଏପରି ଦାଉ ସାଧି ସାରି ସେ କପଟୀ ଦାସୀ ମନେ ମନେ ଭାରି ଖୁସି ହୋଇଗଲା। ଏତିକିବେଳେ ତାର ଫାଲଡ଼ା କଥା ମନେପଡ଼ିଲା। ଫାଲଡ଼ା ତ ମଣିଷ ପରି କଥା କହିପାରେ। କେବେବେଳେ ମଉକା ଦେଖି ଯଦି ସେ

ରାଜାଙ୍କୁ ସତକଥାଟି କହିଦେବ, ତେବେ ସବୁ ଓଲଟପାଲଟ ହୋଇଯିବ। ଏହା ଭାବି ସେ ଦାସୀ ରଜାଙ୍କୁ ସାକୁଲାସାକୁଲି କରି କହିଲା, "ମଣିମା, ମୁଁ ଯେଉଁ ଘୋଡ଼ାଟାରେ ଚଢ଼ି ଆସିଲି, ସେଇଟା ଏଡ଼ିକି ଦୁଷ୍ଟ! ମତେ ପରା ବାଟଯାକ ହନ୍ତସନ୍ତ କରିଦେଲା। ସେଇଟାକୁ ନ ମାରିଦେଲାଯାଏ ମୋ ମନରେ ଶାନ୍ତି ନାହିଁ। ମଣିମା, ହୁକୁମ ଦିଅନ୍ତୁ; ଘାତକ ସେଇଟାକୁ ହାଣିଦେଉ।"

ନୂଆ ରାଣୀର ମନତୋଷ କରିବାକୁ ରାଜା ଘୋଡ଼ାଟିକୁ ହାଣିଦେବାକୁ ହୁକୁମ ଦେଲେ। କିନ୍ତୁ ଏ କଥାଟି ଯାଇ ରଜାଝିଅ କାନରେ ପଡ଼ିଗଲା। ସେ ରଜାଙ୍କ ପାଖକୁ ଯାଇ ଫାଲଡ଼ାର ଜୀବନ ରକ୍ଷା କରିବ ବୋଲି କେତେ ଚେଷ୍ଟା କଲା; କିନ୍ତୁ କେଉଁଥିରେ କିଛି ହେଲାନାହିଁ। ଶେଷକୁ ସେ ଯାଇ ଘାତକ ପାଖରେ ପହଞ୍ଚିଲା, କହିଲା, "ଘାତକଭାଇ, ତୁ ସେ ଘୋଡ଼ାଟିକୁ ମାରିସାରି ତା ମୁଣ୍ଡଟିକୁ ନେଇ ନଗର ଫାଟକ ପାଖରେ ଟାଙ୍ଗିଦେବୁ; ମୁଁ ତାକୁ ଭାରି ଭଲପାଉଥିଲି। ତାକୁ ତ ମରଣମୁହଁରୁ ରଖି ପାରିଲି ନାହିଁ, ତା ମୁହଁଟି ଦେଖି ହେଲେ ଟିକିଏ ସୁଖୀ ହେଉଥିବି।"

ଘାତକ ଦେଖିଲା ଏଥିରେ କିଛି କ୍ଷତି ନାହିଁ କି ପରିଶ୍ରମ ନାହିଁ। ତେଣୁ ସେ ଫାଲଡ଼ାକୁ ମାରି ତା ମୁଣ୍ଡଟି ନେଇ ଫାଟକ ପାଖରେ ଲଟକାଇ ଦେଲା। ତା' ପରଦିନ ସକାଳୁ ରଜାଝିଅ ବତକପଲ ଧରି ଚରାଇବାକୁ ବାହାରିଲା। ଆଗରେ କୋନାଡ୍ ଚାଲିଥାଏ, ପଛରେ ରଜାଝିଅ। ନଗର ଫାଟକ ପାଖରେ ଫାଲଡ଼ାର ମୁଣ୍ଡ ଟଙ୍ଗା ହୋଇଥିବା ଦେଖି ରଜାଝିଅ ଆଖିରୁ ଲୁହ ଝରିପଡ଼ିଲା। ସେ କହିଲା—

"ହାୟ ହାୟ ମୋର ଫାଲଡ଼ା!
ତୋ ମୁଣ୍ଡ ଏଠାରେ ଝୁଲିଲା!!"

ଏକଥା ଶୁଣି ଫାଲଡ଼ାର ମୁଣ୍ଡ କହିଲା—

"ତୁମ ପରି ରାଜକୁମାରୀ
ଯାହା ବତକ ଚରାଇ ବୁଲିଲା!
ତୁମେ ଏପରି ଦୁଃଖରେ ସଢ଼ିଲେ
ତୁମ ମାଆଙ୍କ କାନରେ ପଡ଼ିଲେ
ତାଙ୍କ ଛାତି ହୋଇଯିବ ବିଦାରି
ହାୟ ହାୟ ରାଜକୁମାରୀ !!"

ରଜାଝିଅ ଲୁହ ଗଡ଼ାଇ ଗଡ଼ାଇ ବତକ ଚରାଇବ ବୋଲି ପଡ଼ିଆକୁ ଚାଲିଗଲା। ବତକଗୁଡ଼ାକ ପଡ଼ିଆରେ ଚରିଲେ। ରଜାଝିଅ ମୁଣ୍ଡରେ ତ ତେଲ ମାଲପା ନ ଲାଗି ବାଳଗୁଡ଼ାକ ଫୁରୁଫୁରୁ ହୋଇ ଉଡୁଥାଏ; ସେ ମୁଣ୍ଡ କୁଣ୍ଡାଇ ବେଣୀ ପକାଇବ ବୋଲି ଗୋଟିଏ ହିଡ଼ ଉପରେ ବସିପଡ଼ିଲା। ତା'ମୁଣ୍ଡର ସେ ସୁନାଖିଅ

ପରି ଚକଚକିଆ ବାଳ ଦେଖି ସେଥିରୁ ଦୁଇଟି ଛିଣ୍ଡାଇ ଆଣିବ ବୋଲି କୋନାଡ୍ ଦୌଡ଼ିଗଲା। ଟୋକାଟାର ଏ ବହପ ଦେଖି ରଜାଝିଅ କାନ୍ଦି କାନ୍ଦି କହିଲା –

"ପବନ ଦେବତା ଉଠ ହେ ଜମି
ଉଡ଼ିଯାଉ ଟୋକା ମୁଣ୍ଡର ଝାମ୍ପି।
ବିଲ ପରବତେ ଝାମ୍ପି ଉଡ଼ିବ,
କୋନାଡ୍ ତା ପଛେ ଦଉଡୁଥିବ।
ମୋର ବେଣୀବନ୍ଧା ଯେବେ ସରିବ
ତେବେ ଯାଇଣ ସେ ଝାମ୍ପି ଧରିବ।"

ସଙ୍ଗେ ସଙ୍ଗେ ଦଲକାଏ ପବନ ମାରିଦେଲା ଯେ କୋନାଡ୍ ମୁଣ୍ଡର ଟୋପିଟି ଧଡ଼ିଗଲା। କୋନାଡ୍ ରଜାଝିଅ ମୁଣ୍ଡରୁ ବାଳ ଛିଣ୍ଡାଇବ କଣ, ଟୋପି ଧରିବା ଲାଗି ଧାଇଁଲା। କିନ୍ତୁ ଟୋପିଟା ପବନରେ ପଡ଼ିଆ ପାରହୋଇ ପାହାଡ଼ ଆଡ଼କୁ ଧାଇଁଲା। ସେ ଏପରି ଧାଇଁଥାଏ; ଟୋପି ଧରା ଦେଉ ନଥାଏ। ଏ ଭିତରେ ରଜାଝିଅ ମୁଣ୍ଡ କୁଣ୍ଡାଇ ବେଣୀ ପାରିଦେଲା। ଏତେବେଳେ ଯାଇ କୋନାଡ୍‌ର ହାତପାଆନ୍ତାକୁ ଟୋପି ଆଣିଲା। ମନରାଗ ମନରେ ରଖି କୋନାଡ୍ ବତକ ଜଗିଲା। ସେଦିନ ସନ୍ଧ୍ୟାବେଳକୁ ଦିହେଁ ବତକ ନେଇ ନଅରକୁ ଫେରିଲେ।

ତା' ପରଦିନ ସକାଳୁ ବତକ ଚରାଇବାକୁ ନେଲାବେଳେ କୋନାଡ୍ ଶୁଣିଲା, ରଜାଝିଅ ଘୋଡ଼ାମୁଣ୍ଡକୁ କହୁଛି –

"ହାୟ ହାୟ ମୋର ଫାଲଡ଼ା !
ତୋ ମୁଣ୍ଡ ଏଠାରେ ଝୁଲିଲା !!"

ଏହା ଶୁଣି ଘୋଡ଼ାମୁଣ୍ଡ କହିଲା –

"ତୁମ ପରି ରାଜକୁମାରୀ,
ଯାହା ବତକ ଚରାଇ ବୁଲିଲା।
ତୁମେ ଏପରି ଦୁଃଖରେ ସଢ଼ିଲେ
ତୁମ ମାଆଙ୍କ କାନରେ ପଡ଼ିଲେ,
ତାଙ୍କ ଛାତି ହୋଇଯିବ ବିଦାରି
ହାୟ ହାୟ ରାଜକୁମାରୀ !!"

କୋନାଡ୍ ଏ କଥାର ଅର୍ଥ କିଛି ବୁଝି ନପାରି ପଡ଼ିଆରେ ଯାଇ ବତକ ଚରାଉଛି– ଦେଖିଲା, ରଜାଝିଅ ପୁଣି ଥରେ ବେଣୀ ଫିଟାଇ ମୁଣ୍ଡ କୁଣ୍ଡାଉଛି। ଆଜି ନିଶ୍ଚୟ ସେଥିରୁ ଦୁଇଟି ସୁନାବାଳ ଛିଣ୍ଡାଇ ଆଣିବ ବୋଲି ସେ ଯିମିତି ସେଠାକୁ ଯାଇଛି, ରଜାଝିଅ ପୁଣି ଥରେ ପବନକୁ ଡାକପକାଇଲା –

"ପବନ ଦେବତା ଉଠ ହେ କମ୍ପି,
ଉଡ଼ିଯାଉ ଟୋକା ମୁଣ୍ଡର ଝାମ୍ପି।
ବିଲ ପରବତେ ଝାମ୍ପି ଉଡ଼ିବ
କୋନାଡ୍ ତା ପଛେ ଦଉଡ଼ୁଥିବ।
ମୋର ବେଣୀ ବନ୍ଧା ଯେବେ ସରିବ
ତେବେ ଯାଇଣ ସେ ଝାମ୍ପି ଧରିବ।"

ଆଉ କି କୋନାଡ୍ ଥୟ ଧରି ରହେ! ସେ ତା ଟୋପି ଧରିବା ଲାଗି ଦୌଡ଼ିଲା। ଦୌଡ଼ି ଦୌଡ଼ି ନାକେଦମ୍ ହୋଇଗଲା। ଶେଷକୁ ଟୋପି ଧରି ଆସିବା ବେଳକୁ ରଜାଝିଅ ମୁଣ୍ଡ କୁଣ୍ଡାଇ ସାରିଲାଣି। ସେଦିନ ସନ୍ଧ୍ୟାରେ ବତକ ନେଇ ନଅରକୁ ଫେରିବା ପରେ ସେ ଯାଇ ବୁଢ଼ା ରାଜାଙ୍କୁ କହିଲା, "ମଣିମା, ମୁଁ ଆଉ ସେ ଝିଅଟା ସାଙ୍ଗରେ ବତକ ଚରାଇବାକୁ ଯିବିନାହିଁ।"

ବୁଢ଼ାରଜା ପଚାରିଲେ, "କାହିଁକି?"

କୋନାଡ୍ କହିଲା, "ସେଇଟା ଖାଲି ମତେ ଚିଡ଼ାଉଚି; ହଇରାଣ କରୁଚି। ପୁଣି କଣ କହିବି ମଣିମା, ନଗର ବାହାର ଫାଟକରେ ଗୋଟିଏ ଘୋଡ଼ାମୁଣ୍ଡ ଝୁଲୁଛି ଯେ, ସେ ଝିଅ ତା ସହିତ କଥା ହେଉଛି। ପବନ ବି ତା କଥା ଶୁଣୁଛି।" ଏସବୁ କଥା ଶୁଣି ରଜା ଭାବିଲେ, 'ଏ ଭିତରେ ନିଶ୍ଚୟ କିଛି ଗୁମର ଅଛି। ମୁଁ ନିଜେ ଯାଇ ପରୀକ୍ଷା କରି ଦେଖେ।' ଏପରି ଭାବି ସେ କୋନାଡ୍‌କୁ କହିଲେ, "ହଉ, ତୁ କାଲିକି ତା ସାଙ୍ଗରେ ଯା, ମୁଁ ପରେ ସବୁ କଥା ବୁଝିବି; ଯାହା କରିବାର କରିବି।"

ତା' ପରଦିନ ସକାଳୁ ସକାଳୁ ବୁଢ଼ାରଜା ଗୋଟିଏ କାଠୁରିଆ ବେଶ ଧରି ଆଗତୁରା ଯାଇ ନଗର ବାହାର ଫାଟକ ପାଖରେ ଲୁଚିରହିଲେ। ବତକ ଚରାଇ ନେବାବେଳେ ରଜାଝିଅ ସେଠାରେ ଅଟକିଯାଇ ଘୋଡ଼ାମୁଣ୍ଡକୁ କହିଲା—

"ହାୟ ହାୟ ମୋର ଫାଲଡ଼ା!
ତୋ ମୁଣ୍ଡ ଏଠାରେ ଝୁଲିଲା!!"

ଘୋଡ଼ାମୁଣ୍ଡ କହିଲା—

"ତୁମ ପରି ରାଜକୁମାରୀ,
ଯାହା ବତକ ଚରାଇ ବୁଲିଲା।
ତୁମେ ଏପରି ଦୁଃଖରେ ସଢ଼ିଲେ
ତୁମ ମାଆଙ୍କ କାନରେ ପଡ଼ିଲେ,
ତାଙ୍କ ଛାତି ହୋଇଯିବ ବିଦାରି
ହାୟ ହାୟ ରାଜକୁମାରୀ!!"

ରାଜା ଏ କଥା ଶୁଣି ଜାବା। ସେ କି ଆଉ ନଅରକୁ ଫେରନ୍ତି? ସେ ଆଉ ଗୋଟିଏ ବାଟ ଧରି ଯାଇ ବତକ ଚରିବା ପଡ଼ିଆରେ ପହଞ୍ଚିଗଲେ। ସେଠାରେ ସେ ଗୋଟିଏ ହିଡ଼ ପଛରେ ଲୁଚିଥାନ୍ତି, ରଜାଝିଅ ମୁଣ୍ଡ କୁଣ୍ଡାଇବାକୁ ବସିଲା। ତାର ସେ ସୁନେଲି ବାଳ ଦେଖି ପୁଣି ଥରେ କୋନାଡ୍‌ର ଲୋଭ ହେଲା। କିନ୍ତୁ ସେ ଆସି ତା ବାଳକୁ ଛୁଏଁ କି ନ ଛୁଏଁ, ରଜାଝିଅ ପବନ ଦେବତାଙ୍କୁ ପୁଣି ଥରେ ଗୀତ ଗାଇ ଡାକିଲା।

ରାଜା କୋନାଡ୍‌ର ହଇରାଣ ହରକତ ଦେଖି ନଅରକୁ ଫେରିଲେ। ସେଦିନ ସନ୍ଧ୍ୟାରେ ସେ କୋନାଡ୍‌କୁ କହିଲେ, "ସେ ବତକଚରାଳି ଝିଅଟାକୁ ଏଠିକି ଡାକିଆଣ।"

ରାଜକୁମାରୀ ଆସିବାରୁ ରଜା କୋନାଡ୍‌କୁ ବିଦା କରିଦେଇ କହିଲେ, "ଝିଅ, ମୁଁ ଦେଖୁଛି ତୁମେ ଆସିବା ଦିନୁ କାନ୍ଦୁଚ। ତୁମର ଏଠି ଦୁଃଖ କଣ? କାହିଁକି ଏପରି କାନ୍ଦୁଚ?"

କିନ୍ତୁ ରଜାଝିଅ ତ ଭାରି ସାକମା— ସେ କିଛି କହି ନ ପାରି ଖାଲି କଇଁକଇଁ ହୋଇ କାନ୍ଦିଲା। ଶେଷକୁ ବୁଢ଼ାରଜା କହିଲେ— "ଯଦି ମତେ କହିବାକୁ ଲାଜ କିମ୍ବା ଭୟ ଲାଗୁଛି, ତେବେ ଏହି ଚୁଲିକୁ କହ।"

ଚୁଲିରେ ନିଆଁ ଧକଧକ ହୋଇ ଦମକୁଥାଏ। ରଜାଝିଅ ସେ ନିଆଁ ପାଖରେ ବସି କାନ୍ଦି କାନ୍ଦି ବାହୁନିହେଲା, "ମୁଁ କେଡ଼େ ଥଇଥକରେ ବଢ଼ି ନ ଥିଲି। ବାପା ମଲେ, ମାଆ ମତେ ସେହି କପଟୀ ଦାସୀ ହାତରେ ସ୍ୱାମୀଘରକୁ ପଠେଇଦେଲେ ଯେ ସେ ପୋଡ଼ାମୁହାଁ ମତେ ବାଟରେ କି ହଟହଟା ନ କଲା। ମୋ ଘୋଡ଼ା ଛଡ଼ାଇନେଲା, ମୋ ଲୁଗାପଟା ଛଡ଼ାଇନେଲା, ମୋ ଆୟଅଳଙ୍କାର ଛଡ଼ାଇନେଲା। ହାୟ! ମୋ କପାଳ ମନ୍ଦ ଯେ, ମୋର ସ୍ୱାମୀ ମତେ ଚିହ୍ନି ନପାରି ଦାସୀର ଲୁଗାପଟା ଆୟଅଳଙ୍କାର ଦେଖି ତାକୁହିଁ ରାଣୀ କରିନେଲେ। ସେତିକିରେ ମୋ ଦୁଃଖ ସରିଲା ନାହିଁ ଯେ, ମୋ ପିଲାଦିନର ସାଥୀ ଫାଲଡ଼ାକୁ ବି ସେ ମରାଇଦେଲା। ରଜାଝିଅ ହୋଇ ଜନମ ହୋଇଥିଲି, ବତକଚରାଳି ହୋଇ ପେଟ ପୋଷିଲି। ଛତରା ଟୋକା କୋନାଡ୍ ବି ଆସି ଚୁଟି ଟାଣିବ, ଏ କଥା ଆଉ ମୁଁ କେତେ ସହିବି!!"

ବୁଢ଼ାରଜା ତ ସେ ପାଖରେ ଲୁଚି ରହିଥିଲେ— ସେ ଏକଥା ଶୁଣି ସବୁ ଗୁମର ଜାଣିଗଲେ। ସଙ୍ଗେ ସଙ୍ଗେ ରଜାଝିଅକୁ ଡାକି ତା ଆଖିର ଲୁହ ପୋଛିଦେଲେ। ତାକୁ ଲୁଗାପଟା ପିନ୍ଧାଇ, ବେଶଭୂଷା କରାଇ ଅନ୍ତଃପୁରରେ ରଖାଇଦେଲେ। ତା'ପରେ ପୁଅକୁ ଡାକି କହିଲେ, "ବାପ ରେ, ତୁ ଯାହାକୁ ରାଣୀ ବୋଲି

ଭାବୁଛୁ, ସେ ରାଣୀ ନୁହେଁ, ଡାହାଣୀ। ସେ କପଟୀ ଦାସୀ କଣ କରିଛି, ଶୁଣ।'' ଏହା କହି ବୁଢ଼ାରାଜା ଦେଖିଥିବା ଓ ଶୁଣିଥିବା ସବୁକଥା ପୁଅକୁ କହିଲେ।

ଏକଥା ଶୁଣି ରଜାପୁଅ ଖଡ୍‌ଗହସ୍ତ ହୋଇଗଲା। ତା' ପଅରଦିନ ରଜା ଗୋଟିଏ ବଡ଼ ଭୋଜିସଭା କରାଇ ସେଠାକୁ ବହୁ ଲୋକଙ୍କୁ ନିମନ୍ତ୍ରଣ କଲେ। ସମସ୍ତେ ଏକାଠି ବସି ଖୁସିଗପ କରୁଛନ୍ତି— ରଜାପୁଅ, ସେ କପଟୀ ଦାସୀ ବି ବସିଛନ୍ତି। ବୁଢ଼ାରଜା ସେ ଦାସୀକୁ ପଚାରିଲେ, ''ଆଛା ବୋହୂ-ମା, ସଂସାରରେ କଣ ଏ ଭଳି ଲୋକ ନାହାନ୍ତି ଯେ କି ଅନ୍ୟକୁ ଠକି ନିଜେ ବଡ଼ଲୋକ ହୁଅନ୍ତି? ଧର, ଏଇ ଗୋଟିଏ କଥା। ଜଣେ ରଜାଝିଅ ତା ଦାସୀ ସାଥିରେ ଆସୁ ଆସୁ, ଦାସୀ ଇମିତି ଉପାୟ କଲା ଯେ ରଜାଝିଅ ତାକୁ ତା ଘୋଡ଼ା, ତା ଲୁଗାପଟା, ତା ଆୟଅଳଙ୍କାର ସବୁ ଦେଇଦେଲା। ତା'ପରେ ସେ ଦାସୀ ନଅରକୁ ଆସି ନିଜେ ରଜାଝିଅ ବୋଲି କହି ରାଣୀ ହୋଇଗଲା। କିନ୍ତୁ କିଛି ଦିନ ପରେ ସେ ଦୋଷୀ ଧରାପଡ଼ିଲା। ତୁମେ ବିଚାରପତି ହୋଇଥିଲେ ସେ ଭଳି ଦୋଷୀକୁ କି ଦଣ୍ଡ ଦିଅନ୍ତ, କହିଲ?''

କପଟୀ ଦାସୀ ଭଲେଇ ହୋଇ କହିଲା, ''ମଣିମା, ମୁଁ ହୋଇଥିଲେ ସେ ଦୋଷୀକୁ କି ଦଣ୍ଡ ଦିଅନ୍ତି, ଶୁଣନ୍ତୁ। ମୁଁ ଗୋଟିଏ କାଠ ବାକ୍‌ସ ଭିତରେ ମୁନିଆ ଲୁହାକଣ୍ଟା ବାଡ଼େଇ ଏପରି କରନ୍ତି ଯେ, ସେ ଭିତରେ ପାଦ ଦେଲେ ଲୁହାକଣ୍ଟା ଫୋଡ଼ିହୋଇଯାଆନ୍ତା। ତା'ପରେ ସେ ଦୋଷୀକୁ ସେ ବାକ୍‌ସରେ ବସାଇ ବାକ୍‌ସଟାକୁ ହୁରୁଡ଼ା ଘୋଡ଼ା ପଛରେ ବାନ୍ଧିଦିଅନ୍ତି; ସେଠୁ ଘୋଡ଼ାକୁ ଦିଅନ୍ତି ଛାଟେ ଯେ ଘୋଡ଼ା ଖାଲି ହେଁ ହେଁ ହେଁ ହେଁ ହୋଇ ଚାରିକାତ ଛାଟି ଦୌଡ଼ନ୍ତା; ଆଉ ସେ ବାକ୍‌ସ ଭିତରେ ସେ ଦୋଷୀ ଖାଲି ପଡ଼ନ୍ତା ଉଠନ୍ତା। ଏପରି ପଡ଼ି ଉଠି ସେ ମଲାଯାଏ ଘୋଡ଼ାକୁ ଦଉଡ଼ାନ୍ତି।''

ବୁଢ଼ାରଜା ସଙ୍ଗେ ସଙ୍ଗେ ରାଜଦଣ୍ଡ ଧରି ଠିଆହୋଇ ପଡ଼ିଲେ। କହିଲେ, ''ପାପିନୀ, ତୁ ହେଉଛୁ ସେହି ଦୋଷୀ। ତୋ ଦଣ୍ଡ ତୁ ନିଜେ ଠିକ୍ କରିଛୁ— ଏବେ ଦଣ୍ଡ ଭୋଗ।''

''ମିଛ କଥା ମଣିମା, ମିଛ କଥା ମଣିମା!'' କହି ସେ ଦାସୀ ପାଟିକରୁଥାଏ। ରଜା ତାକୁ ଲୁହାକଣ୍ଟାଦିଆ କାଠ ବାକ୍‌ସରେ ପୂରାଇ ହୁରୁଡ଼ା ଘୋଡ଼ା ପଛରେ ବାନ୍ଧିଦେଲେ। 'ମରିଗଲି' 'ମରିଗଲି' ବୋଲି ସେ ପାଟି କରୁଥାଏ; ହୁରୁଡ଼ା ଘୋଡ଼ା ଦୌଡୁଥାଏ। ଏପରି କରି ସେ ପାଲଟା କନିଆଁ ଦାସୀକୁ ଦଣ୍ଡ ଦେଇ ରଜା ଅସଲ ରାଜକୁମାରୀ ସହିତ ନିଜ ପୁଅର ବିବାହ କରାଇଦେଲେ।

—

# ଭାଲୁଆ ପାଇକ

ଦେଶରେ ସେତେବେଳକୁ ଘମାଘୋଟ ଯୁଦ୍ଧ ଲାଗିଥାଏ। ଜଣେ ଯୁଆନ ଟୋକା ସୈନ୍ୟବାହିନୀରେ ନାମ ଲେଖାଇ ଯୁଦ୍ଧରେ ମିଶିଗଲା। ଜୀବନକୁ ପାଣିଛଡ଼େଇ ସେ ଇମିତି ଲଢ଼ିଲା ଯେ, ଯେତେବେଳେ ଦେଖିବ ସେ ଯାଇ ଆଗ ଧାଡ଼ିରେ। ଯେଉଁଠି କି ଗୁଳି ଗୋଳା ବର୍ଷି ପଡୁଥିବ, ସେ ଆଗତୁରା ହୋଇ ସେଇଠିକି ମାଡ଼ିଯିବ। କିନ୍ତୁ କିଛି ଦିନ ଲଢ଼େଇ ଚାଲିବା ପରେ ଦୁଇ ପକ୍ଷ ଭିତରେ ସନ୍ଧି ହୋଇଗଲା। ଦେଶକୁ ଶାନ୍ତି ଫେରିଆସିଲା। ଯୁଦ୍ଧ ସରିଯିବା ପରେ ଆଉ ପାଇକଙ୍କୁ ପଚାରେ କିଏ? କଥାରେ ଅଛି, ''ମଦଘଡ଼ା, କାମ ସରିଲେ ଗଡ଼ଗଡ଼ା।'' ରାଜା ସବୁ ନୂଆ ପାଇକଙ୍କୁ ଚାକିରିରୁ ବରଖାସ୍ତ କରିଦେଲେ। ଯେଉଁ ସେନାପତି ସେମାନଙ୍କୁ ଲଢ଼ିବା ପାଇଁ ପଠାଉଥିଲେ, ସେ କହିଦେଲେ, ''ପିଲେ, ତୁମର ଏଥର ଛୁଟି– ଯୁଆଡ଼େ ପାରିବ ସିଆଡ଼େ ଯାଅ।''

ଅନ୍ୟ ସମସ୍ତଙ୍କ ପରି ଏ ପାଇକଟି ବି କାନମୁଣ୍ଡ ଆଉଁସି ଘରକୁ ଫେରିଆସିଲା। ହାତରେ ତାର ବନ୍ଧୁକଖଣ୍ଡିକ ଛଡ଼ା ଆଉ ଧନଦରବ ବୋଲି କିଛି ନ ଥାଏ। ସେ ଘରକୁ ଫେରି ଦେଖେ ତ, ଏ ଭିତରେ ତାର ବାପା ମାଆ ମରି ହଜି ଗଲେଣି। ଘରେ ଭାଇମାନେ ମାମଲତକାର। ଏ ଲୋକ ହାତରେ ତ ଟଙ୍କାକଉଡ଼ି ନ ଥାଏ– ଭାଇମାନେ ତାକୁ ପଚାରନ୍ତେ କାହିଁକି? କହିଲେ, ''ତୁ ତ ଯାହା କମେଇଲୁ ଖାଇପିଇ ଉଡ଼େଇଦେଲୁ, ଘରେ ଅଛି କଣ ଯେ ବସି ଖାଇବୁ? ଏଥର ତୋ ଧନ୍ଦା ତୁ ଦେଖ।''

ଏ ଲୋକ କହିଲା, ''ଭାଇ, ମୁଁ ତ ଲଢ଼େଇ କରିବା ଛଡ଼ା ଆଉ କିଛି ଶିଖି ନାହିଁ, କି ଧନ୍ଦା କରିବି?''

ଭାଇଏ କହିଲେ, ''ଆଉ ଥରେ ଲଢ଼େଇ ଲାଗିବାଯାଏ ଭିକ ମାଗି ଖାଅ।''

ଭାଇଙ୍କ ମୁହଁରୁ ଏ ନିଷ୍ଠୁର କଥା ଶୁଣି ପାଇକଟି ତା ବନ୍ଧୁକଖଣ୍ଡିକ ଧରି ଘରୁ ବାହାରି ପଡ଼ିଲା। ଭୋକଉପାସରେ ଚାଲି ଚାଲି ଯାଉ ଯାଉ ଗୋଟିଏ ତୋଟା ଭିତରେ ପହଞ୍ଚିଗଲା। ତୋଟାର ଝଙ୍କାଳିଆ ଗଛଗୁଡ଼ିକ ପହରା ଦେଲାପରି ଠିଆହୋଇଥାନ୍ତି। ସେ ଭିତରେ ଟିକିଏ ଠିଆହୋଇ ପାଇକବୀର ଭାବିଲା, ''ଦେଶ ପାଇଁ ଏତେ ଲଢ଼ିଲି, ଶେଷକୁ ମତେ ମିଳିଲା କଣ? ମୁଁ ଭିକ ମାଗି ବଞ୍ଚିବାଟା କଣ ଠିକ୍ ହେବ, ନା ଉପବାସରେ ମରିବାଟା ଠିକ୍ ହେବ?''

ସେ ଏପରି ଭାବି ଭାବି ଠିଆହୋଇଛି, ହଠାତ୍ ଗଛଗହଳରେ ପତ୍ରଗୁଡ଼ାକ ଖଡ୍‌ଖାଡ୍ ହେଲା। କଥା କଣ ବୋଲି ସେ ଚାହିଁଦିଏ ତ, ତା ଆଗରେ ଖୁବ୍

ଆଡ଼ା-ଚଉଡ଼ାରେ ଜଣେ ବିଚିତ୍ର ଲୋକ ଠିଆହୋଇଛି। ମୋଟା ସିମିତି, ଡେଙ୍ଗା ସିମିତି। ପିନ୍ଧିଛି ଗୋଟିଏ ଶାଗୁଆ ରଙ୍ଗର କୋଟ୍। କିନ୍ତୁ ତା' ପାଦ ଦୁଇଟା ଗାଈ ଖୁରା ପରି ଦୁଇଫାଳିଆ। ପାଇକ ପାଟିରୁ କଥା ନ ବାହାରୁଣୁ ସେ ଲୋକ କହିଲା, "ତୁ ଯାହା ଭାବୁଛୁ ମୁଁ ଜାଣିଗଲିଣି। ମୁଁ କଥା ଦେଉଛି, ତୋର କିଛି ଅଭାବ ରହିବ ନାହିଁ। ଧନ ଦରବ ଯେତେ ଚାହିଁବୁ ସେତେ ପାଇବୁ। କିନ୍ତୁ ତୁ ଯଦି ଡରୁଆ ଛେରୁଆଟାଏ ହୋଇଥିବୁ, ତେବେ ମୋ ଦେବାଟା ବ୍ୟର୍ଥ ହୋଇଯିବ – କଣ ବୁଝିପାରୁଛୁଟି ?"

ପାଇକ କହିଲା, "ପାଇକ ପୁଣି ଡରୁଆ ଛେରୁଆ ! ଏ କଣ କେବେ ହୋଇପାରେ ଯେ, ତୁମେ କହୁଛ ? ମୋ ଛାତିରେ କେତେ ଦମ୍ଭ ଅଛି ପରୀକ୍ଷା କଲେ ଜାଣିପାରିବ ନାହିଁ ?"

ଲୋକଟା କହିଲା, "ଠିକ୍ ଅଛି, ଠିକ୍ ଅଛି। ଟିକିଏ ତୋ ପଛକୁ ଚାହିଁଲୁ।"

ପାଇକ ପଛକୁ ବୁଲିପଡ଼ି ଚାହିଁଦିଏ ତ ଗୋଟାଏ ବିରାଟ ଭାଲୁ ଘାଉଁ ଘାଉଁ କରି ତା ଆଡ଼କୁ ମାଡ଼ିଆସୁଛି। ପାଇକ ସଙ୍ଗେ ସଙ୍ଗେ ତା ବନ୍ଧୁକ ଦେଖାଇ ଗର୍ଜନ କଲା, "ରହ ରହ, ଏକାଚୋଟକେ ତୋ ତାଳୁ ଫଟାଇ ନ ଦେଇଛି ତ ମୁଁ ମରଦପୁଅ ନୁହେଁ।" ସଙ୍ଗେ ସଙ୍ଗେ ଏପରି ଲାଖ କରି ସେ ବନ୍ଧୁକ ଟିପିଦେଲା ଯେ, ସତକୁ ସତ ସେହି ଏକାଚୋଟକେ ଭାଲୁଟା ଟଳିପଡ଼ିଲା। ଏଥର ସେ ବିଚିତ୍ର ଲୋକଟା କହିଲା, "ତୋର ଯେ ଠିକ୍ ସାହସ ଅଛି, ସେଥିରେ ଆଉ ସନ୍ଦେହ ନାହିଁ। କିନ୍ତୁ ମୋର ଆଉ ଗୋଟିଏ ସର୍ତ୍ତ ମାନିବାକୁ ପଡ଼ିବ, ପାରିବୁ ?"

ପାଇକ କହିଲା – "ଧର୍ମ ବାଟରେ ଯିବାକୁ ହେଲେ, ତୁମେ ଯାହା କହିବ, ମୁଁ ସେଥିରେ ରାଜି। କିନ୍ତୁ ଅଧର୍ମ କଥା ଯଦି କହ, ତେବେ ମୁଁ ସେଥିରେ ମୋଟେ ରାଜି ନୁହେଁ।" କାରଣ ସେ ସେତେବେଳକୁ ଜାଣିଗଲାଣି ଯେ ସେ ଯେଉଁ ବିଚିତ୍ର ଲୋକଟା ସହିତ କଥାଭାଷା କରୁଛି, ସେ ସ୍ୱୟଂ ସଇତାନ।

ସଇତାନ କହିଲା – "ଧର୍ମ କି ଅଧର୍ମ ତୁ ତୋର ଭାବିଚିନ୍ତି ଠିକ୍ କର। ମୋ ସର୍ତ୍ତ ହେଲା, ସାତବର୍ଷ ଯାଏ ତୁ ଗାଧୋଇବୁ ନାହିଁ କି ଦେହରୁ ମଳି ଛଡ଼ାଇବୁ ନାହିଁ; ଖିଅର ହେବୁ ନାହିଁ, ମୁଣ୍ଡ କୁଣ୍ଡାଇବୁ ନାହିଁ; ନଖ କାଟିବୁ ନାହିଁ କି ଭଜନ ପ୍ରାର୍ଥନା କରିବୁ ନାହିଁ। ମୁଁ ତୋତେ ଗୋଟିଏ କୋଟ୍ ଦେବି ଓ ଖଣ୍ଡିଏ ଚଦର ଦେବି। ସାତବର୍ଷଯାକ ତୁ ସେ କୋଟ ପିନ୍ଧିବୁ ଓ ଚଦର ଧରିବୁ। ଯଦି ଏ ସାତ ବର୍ଷ ଭିତରେ ତୁ ମରିଗଲୁ, ତେବେ ତୋ ଆତ୍ମା ମୋ ହାତମୁଠାକୁ ଚାଲିଆସିବ; ନାହିଁ ଯଦି ବଞ୍ଚିଗଲୁ, ତେବେ ଅକଳନ ଧନରତ୍ନର ମାଲିକ ହୋଇ ଜୀବନସାରା ସୁଖ ଭୋଗ କରିବୁ – କଣ ଏ ସର୍ତ୍ତରେ ତୁ ରାଜି ?"

ପାଇକ ଦେଖିଲା, ଏ ଏକ ଜୀବନ-ମରଣ ସମସ୍ୟା। କିନ୍ତୁ ଲଢ଼େଇ ବେଳେ ସେ ତ ଅନେକ ଥର ଜୀବନକୁ ପାଣିଛଡ଼େଇ ମରଣମୁହଁକୁ ଡେଇଁ ପଡ଼ିଥିଲା— ଏଥକୁ ବା ସେ ଡରନ୍ତା କାହିଁକି? ସେ ସଇତାନର ସର୍ତ୍ତରେ ରାଜି ହୋଇଗଲା। ସଇତାନ ତାକୁ ନିଜର ଶାଗୁଆ ରଙ୍ଗର କୋଟ୍‌ଟି ଦେଇ ତା'ଠାରୁ ପାଇକ କୋଟ୍‌ଟି ନେଇ ଗଲା। କହିଲା, "ତୁ ମୋର ଶାଗୁଆ ରଙ୍ଗର କୋଟ୍ ପିନ୍ଧି ଦେଖିବୁ, ପକେଟ୍‌ରେ ହାତ ପୂରାଇଲାମାତ୍ରେ ସେଥିରେ ସୁନାମୋହର ଭରି ହୋଇଯାଉଛି। ତୁ ଯେତେ ଖର୍ଚ୍ଚ କଲେ ବି ସେ ପକେଟ ଖାଲି ହେଉନାହିଁ।" ତା'ପରେ ସେ ମରିପଡ଼ିଥିବା ଭାଲୁ ଚମଡ଼ାଟି ଉତାରିଥାଣି ପାଇକ ବୀର ପିଠିରେ ପକାଇଦେଲା। କହିଲା, "ଏ ଭାଲୁ ଚମଡ଼ାଟି ଦିନଯାକ ତୋ ଦେହର ଚାଦର ଓ ରାତିରେ ତୋର ଶେଯ ହେବ। ତୁ ଅନ୍ୟ ଶେଯରେ ଶୋଇବୁ ନାହିଁ କି ଅନ୍ୟ ଚାଦର ଧରିବୁ ନାହିଁ। ଆଜିଠାରୁ ତୋ ନାଆଁ ଭାଲୁଆ ପାଇକ ହୋଇଗଲା।" ଏତିକି କହି ସଇତାନ ଉଭାନ ହୋଇଗଲା।

ପାଇକ ସଙ୍ଗେ ସଙ୍ଗେ କୋଟ୍‌ଟି ପିନ୍ଧିପକାଇ ପକେଟରେ ହାତ ପୂରାଇ ଦେଲା। ସତକୁ ସତ କୋଟ୍ ପକେଟରେ ସୁନା ମୋହର ଖୁନ୍ଦି ହୋଇ ରହିଥାଏ। ସେ ମନ ଆନନ୍ଦରେ ଭାଲୁ ଚମଡ଼ାଟି କାନ୍ଧରେ ପକାଇଦେଇ ଦେଶ ବୁଲି ବାହାରିପଡ଼ିଲା। ଯାହାର ଧନବଳ ଅଛି, ତାର ମନୋବଳ ଅଛି। ସେହିଦିନୁ ଲୋକେ ତାକୁ ଭାଲୁଆ ବୋଲି ଡାକିଲେ। କିନ୍ତୁ ସେ ଲୋକଙ୍କ ଡାକକୁ ଖାତିର ନ କରି ମଜାରେ ଖାଇପିଇ ବୁଲିଲା। ପ୍ରଥମ ବର୍ଷଟା ତା ଚେହେରା ଦେଖି ଲୋକେ ସେତେ ଘୃଣା କରୁ ନ ଥିଲେ। କିନ୍ତୁ ଦ୍ୱିତୀୟ ବର୍ଷ ବେଳକୁ ସେ ଗୋଟାଏ ପଶୁ ଭଳି ଦେଖାଗଲା। ତାର ସେ ବାଳବାଳୁଆ ମୁହଁ, ଝୋଟ ପରି କହରା ଦାଢ଼ି ଆଉ ବାଘନଖ ପରି ନଖଗୁଡ଼ାକ ବଡ଼ ଅପରଛନିଆ ଦେଖାଯାଉଥାଏ। ମଇଳା ତ ଦେହରେ ଗୋବର ଲେସି ହେଲା ଭଳି ଲେସି ହୋଇ ରହିଥାଏ— ତା' ଉପରେ ମଞ୍ଜି ବୁଣିଦେଲେ ଗଛ ଉଠିଯାଆନ୍ତା ପରା! ଫଳରେ ତାକୁ ଯେ ଦେଖିଲା, ସେ ଭାଗି ପଳାଇଲା। କିନ୍ତୁ ଭାଲୁଆର ପଇସାର ଅଭାବ ନ ଥାଏ। ସେ ଗରିବଗୁରୁବାଙ୍କୁ ଟଙ୍କା ପଇସା ଦେଇ କହେ, "ପ୍ରଭୁଙ୍କୁ ଭଜନ କର। ଭାଇ, ମୋ ପାଇଁ ଟିକିଏ ପ୍ରାର୍ଥନା କର, ମୁଁ ଯେପରି ସାତଟା ବର୍ଷ ବଞ୍ଚିଯାଏ।" କିନ୍ତୁ ଯେଉଁ ହୋଟେଲକୁ ଯାଏ, ସେଠାରେ ତାକୁ ଦୁଆର ମଡ଼େଇ ଦିଅନ୍ତି ନାହିଁ। ହୋଟେଲ ମାଲିକ କହେ, "ପଳା ପଳା, ତତେ ଦେଖିଲେ ଅନ୍ୟ ବାବୁଭାୟାମାନେ ଏଠାକୁ ଆସିବେ ନାହିଁ। ଆମ ହୋଟେଲର ବଦନାମ ହେବ।" ତଥାପି ଟଙ୍କାକ ଜାଗାରେ ପାଞ୍ଚଟଙ୍କା ପାଇଗଲେ ସବୁରି ମୁହଁ ବନ୍ଦ ହୋଇଯାଏ। ଏପରି ଭାବରେ ତିନି ବର୍ଷ ବିତିଗଲା। ଚତୁର୍ଥ ବର୍ଷ ବେଳକୁ

ସେ ଭାବିଲା, ଆଉ ଇମିତି ବୁଲା ଫକିର ପରି ବୁଲିବ ନାହିଁ; କେଉଁଠି ହେଲେ ଥାକିଯିବ। ଏହା ଭାବି ସେ ଗୋଟିଏ ହୋଟେଲ ମାଲିକକୁ ମନକଥା ଜଣାଇଲା। କିନ୍ତୁ ହୋଟେଲ ମାଲିକ ତାକୁ ଘର ତ ଘର, ଘୋଡ଼ାଶାଳରେ ବି ଜାଗା ଦେବାକୁ ରାଜିହେଲାନାହିଁ। କହିଲା, ଭାଲୁଆକୁ ଦେଖିଲେ ଘୋଡ଼ା ହୁରୁଡ଼ିବେ। ବହୁ କୁହାପୋଛା ପରେ ଖୁବ୍ ଚଢ଼ା ଭଡ଼ା ନେଇ ମାଲିକ ତାକୁ ଗୋଟିଏ ଟୁଙ୍ଗି ଘର ଛାଡ଼ିଦେଲା। କଥା ରହିଲା ଯେ, ସେ କେବେ ବାହାରକୁ ବାହାରିବ ନାହିଁ, ଖିଆପିଆ, ଶୁଆବସା ସବୁ ସେହି ଟୁଙ୍ଗି ଭିତରେ କରିବ।

ଦିନକର କଥା। ଭାଲୁଆ ତା ଟୁଙ୍ଗି ଭିତରେ ଭାଲୁ ଚମଡ଼ା ପକାଇ ଶୋଇଛି; ସାତ ବର୍ଷ କିମିତି କଟିଯିବ ବୋଲି ଭାବୁଛି, ଶୁଣିଲା ବାହାରେ କେହି ଜଣେ ଲୋକ ବିକଳ ହୋଇ କାନ୍ଦୁଛି। ରୂପଟା ସିନା ଭାଲୁ ପରି ହୋଇଯାଇଥାଏ, କିନ୍ତୁ ତା ହୃଦୟଟି ବଡ଼ କୋମଳ। କାନ୍ଦ-ବୋବାଳି ଶୁଣି ସେ ତା ଟୁଙ୍ଗିରୁ ବାହାରି ଆସିଲା। ଆସି ଦେଖେ ତ ଜଣେ ବୁଢ଼ାକୁ ରାଜାଙ୍କ ସିପାହି ବାନ୍ଧି ପକାଉଛି; ତେଣୁ ବୁଢ଼ା କାନ୍ଦୁଛି। ଭାଲୁଆକୁ ଦେଖି ସମସ୍ତେ ଛାନିଆ ହୋଇ ଦୌଡ଼ି ପଳାଉଥିଲେ। ଭାଲୁଆ ଅନେକ ପ୍ରକାର କହିବାରୁ ସେମାନେ ଅଟକିଲେ। କଥା କଣ ବୋଲି ବୁଝୁ ବୁଝୁ ଜଣାପଡ଼ିଲା ଯେ, ବୁଢ଼ା ଦେବାଳିଆ ହୋଇଯିବାରୁ ଧାର ଉଧାର କରି ଚଳୁଥିଲା; ଏ ହୋଟେଲ ମାଲିକଠାରୁ ସେ କିଛି ଟଙ୍କା କରଜ କରିଥିଲା। କରଜ ଶୁଝି ନପାରିବାରୁ ଏ ଲୋକ ନାଲିଶ କଲା। ରଜା ରାୟ ଦେଲେ ଯେ, ବୁଢ଼ା ଜେଲ ଯିବ; ତା ଘରବାଡ଼ି ନିଲାମ ହୋଇ କରଜ ଶୁଝାହେବ। ବୁଢ଼ାର ଅବସ୍ଥା ଦେଖି ଭାଲୁଆର ଆଖିରୁ ଲୁହ ଝରିପଡ଼ିଲା। ସେ କହିଲା, ‘‘ମଉସା, ତୁମେ ଥୟ ଧର। ମୁଁ ତୁମ କରଜଟଙ୍କା ଶୁଝିଦେବି।’’ ସଙ୍ଗେ ସଙ୍ଗେ ସେ ତା ପକେଟରୁ ସୁନା ମୋହର କାଢ଼ି କରଜ ଶୁଝିଦେଲା। ବୁଢ଼ା ପୁଣି ଥରେ ବେପାର-ବଣିଜ କରି ଚଳିବ ବୋଲି ତା ହାତରେ ମଧ ଥଳିଏ ମୋହର ଧରାଇଦେଲା। ଲୋକେ ତା ଦୟାଳୁପଣ ଦେଖି ତାକୁ ଧନ୍ୟ ଧନ୍ୟ କହିଲେ। ବୁଢ଼ା ତା ହାତ ଧରି କହିଲା, ‘‘ବାବୁ, ତୁମ ରୂପ ଇମିତି, ହେଲେ ତୁମେ ଏଡ଼େ ମହତ୍ ବୋଲି ମୁଁ ଜାଣି ନ ଥିଲି। ମୁଁ କଣ କରି ତୁମ ଋଣ ଶୁଝିପାରିବି, ଜାଣିପାରୁନି। ମୋର ତିନିଟି ଝିଅ ଅଛନ୍ତି। ଆସ ଆମ ଘରକୁ ଯିବ; ତୁମେ ମୋ ଝିଅଙ୍କୁ ଦେଖିବ। ତୁମେ ଯେଉଁଟିକୁ ପସନ୍ଦ କରିବ, ସେଇଟିକୁ ମୁଁ ତୁମ ସହିତ ବାହା କରେଇଦେବି। ତୁମେ ଏବେ ସିନା ଇମିତି ହୋଇଛ, ମୋ ଝିଅକୁ ଧରି ଘର କଲେ ତୁମ ରୂପଭେକ ବଦଳିଯିବ।’’

ବୁଢ଼ା କଥାରେ ରାଜିହୋଇ ଭାଲୁଆ ଯାଇ ତା’ ଘରେ ପହଞ୍ଚିଗଲା। ତାକୁ ଦେଖି ସାଇପଡ଼ିଶା ଲୋକେ ଦୁଆର କିଳି ଘରେ ଲୁଚିଲେ। ବୁଢ଼ା ଯାଇ ତା

ତିନି ଝିଅଙ୍କୁ ମନକଥା କହିବାରୁ ବଡ଼ ଝିଅ ତାକୁ ଦେଖିବାକୁ ଆସିଲା, କିନ୍ତୁ ଭାଲୁଆକୁ ଦେଖୁ ଦେଖୁ ସେ ଏପରି ଗଡ଼ି ଛାଡ଼ି ଦୌଡ଼ି ପଳାଇଲା ଯେ, ଆଉ ତା ପାଖ ମାଡ଼ିଲା ନାହିଁ। ବୁଢ଼ା ସେଇଠୁ ତା ମଝିଆଁ ଝିଅକୁ ବୁଝାଇଶୁଝାଇ ଭାଲୁଆ ପାଖକୁ ଡାକିଆଣିଲା। ମଝିଆଁ ଝିଅ କହିଲା, ''ବାପା, ମୁଁ ମଣିଷ ହୋଇ ଭାଲୁଟାକୁ କିପରି ବାହା ହେବି? ଗଲାବର୍ଷ ଯେଉଁ ଭାଲୁନାଚ ଆସିଥିଲା, ସେ ଭାଲୁଟା ତ ଗୋଡ଼ରେ ମୋଜା ପିନ୍ଧିଥିଲା, ଦେହରେ ଜାମା ଲଗେଇଥିଲା। ଇଏ ସେମିତି ଭାଲୁ ହୋଇଥିଲେ, ଆମର ତ ଭାଗ୍ୟ ମନ୍ଦ! ଭାଲୁଟାକୁ ବାହାହୋଇ ରହିଲି ବୋଲି ଜାଣନ୍ତି– ଇମିତି ଅପରଛନିଆ ଭାଲୁଟାକୁ ମୁଁ ବାହା ହେବି ନାହିଁ।'' ବୁଢ଼ା ଶେଷରେ ସାନ ଝିଅକୁ ଡାକି ସବୁ କଥା କହିଲା। ଭାଲୁଆକୁ ଦେଖି ସେ କହିଲା, ''ବାପା, ଯେଉଁ ଲୋକ ଆମର ଏତେ ଉପକାର କରିଛନ୍ତି, ତାଙ୍କ ରୂପଟା ଖରାପ ବୋଲି ମୁଁ ତାଙ୍କୁ ଘୃଣା କରି ପାରିବି ନାହିଁ। ମୁଁ ତୁମ କଥା ରଖି ଏହାଙ୍କୁହିଁ ବାହା ହେବି। ଆଜିଠାରୁ ଏ ହିଁ ମୋ ବର।''

ଭାଲୁଆ ସାନ ଝିଅଟି ଉପରେ ଭାରି ସନ୍ତୁଷ୍ଟ ହୋଇଗଲା। ନିର୍ବନ୍ଧ ଶେଷରେ ସେ ତା ହାତରୁ ମୁଦିଟି କାଢ଼ି ମଝିରୁ ଦୁଇଗଡ଼ କରି ଭାଙ୍ଗିଦେଲା। ସେଥିରୁ ସେ ଝିଅକୁ ଦେଇ ଆର ଗଡ଼କ ନିଜ ପାଖରେ ରଖିଲା। ଝିଅର ଗଡ଼କରେ ଭାଲୁଆର ନାଆଁ ଲେଖା ହୋଇଥାଏ। ଭାଲୁଆର ଗଡ଼କରେ ଝିଅଟିର ନାଆଁ ଲେଖା ହୋଇଥାଏ। ତାର ତ ଆହୁରି ସାତ ବର୍ଷ ପୂରି ନ ଥାଏ; ତେଣୁ ସେ ଆଉ ସେଠାରେ ରହନ୍ତା କିପରି? ଚାଲିଆସିବାବେଳେ ଝିଅଟିକୁ କହି ଆସିଲା, ''ମୋ ମୁଦି ଫାଳକ ସାଇତି ରଖିଥିବ। ମତେ ଆହୁରି ପ୍ରାୟ ତିନିବର୍ଷ ଏପରି ବୁଲିବାକୁ ପଡ଼ିବ। ତା'ପରେ ଯାଇ ମୁଁ ଫେରିବି। ଯଦି ନ ଫେରେ, ତମେ ଜାଣିବ ଯେ ମୁଁ ମରିଗଲି। କିନ୍ତୁ ଏ ଭିତରେ ପ୍ରଭୁଙ୍କୁ ପ୍ରାର୍ଥନା କର, ମୋର ଯେପରି କିଛି କ୍ଷତି ନ ହୁଏ।''

ସେ ଚାଲିଯିବା ପରଠୁ ଝିଅଟି କଳା ରଙ୍ଗର ଲୁଗାପଟା ପିନ୍ଧି ଦଇବ ତା ଭାଗ୍ୟରେ ଏଭଳି ବରଟିଏ ଖଞ୍ଜି ଦେଇଥିଲା ବୋଲି ଚିନ୍ତାରେ ବସିରହିଲା। ବଡ଼ ଦୁଇ ଭଉଣୀ କଟା ଘା'ରେ ଲୁଣ ଛିଟା ଦେଲା ପରି କଥାକଥାକେ ଦାଉକା ଦେଇଚାଲିଲେ। ବଡ଼ କହେ, ''ଆଲୋ, ଭାଲୁ ରାମ୍ପି ଦେବ ଲୋ, ତା ହାତ ଧରିବାବେଳେ ହୁସିଆର ଥିବୁ।'' ମଝିଆଁ କହେ, ''ଆଲୋ, ଭାଲୁମାନେ ମିଠା ଜିନିଷ ଖାଇବାକୁ ଭଲ ପାଆନ୍ତି। ତୋ ଭାଲୁ ଯଦି ତୋ ରୂପ ଦେଖି ଲୋଭାଏ, ତେବେ କାମୁଡ଼ି ଖାଇଯିବ। ନିର୍ବନ୍ଧ ତ ଇମିତି ଇମିତି ସରିଲା; ବାହା ଦିନ ନାଚ ଦେଖିବା– ବାଃ ବାଃ ରେ କିମିତି ମଜା, ଭାଲୁ ନାଚ କରେ ବଜାଇ ବାଜା!'' ବିଚାରୀ ଝିଅଟି ମୁଣ୍ଡପୋତି ସବୁ ସହିଯାଏ। ଆଖିରୁ

ଲୁହ ଝରାଏ, ପାଟିରୁ କଥା ବାହାରେ ନାହିଁ। ମନେ ମନେ ପ୍ରାର୍ଥନା କରୁଥାଏ, 'ମୋ ମଣିଷଟିକୁ ସୁଖରେ ରଖିଥାଅ ପ୍ରଭୁ !'

ସେ ପଟେ ଭାଲୁଆ ଦୁନିଆର ଏ ମୁଣ୍ଡରୁ ସେ ମୁଣ୍ଡଯାଏ ବୁଲି ବୁଲି ଦାନଧର୍ମ କରିଚାଲିଥାଏ। ନିଜେ ସିନା ଭଜନ ପ୍ରାର୍ଥନା କରିବାକୁ ମନା, ଅନ୍ୟ ହାତରେ କରାଇଲେ ଦୋଷ କଣ ? ଚାହୁଁ ଚାହୁଁ ସାତ ବର୍ଷ ପୂରିଗଲା। ଠିକ୍ ସାତ ବର୍ଷ ପୂରିବା ଦିନ ସେ ଯାଇ ସେହି ତୋଟା ଭିତରେ ପହଞ୍ଚିଗଲା। ସେ ଗୋଟିଏ ଗଛ ତଳେ ବସିଛି, ତାଳପତ୍ର ହଲାଇ ସଇତାନ ଆସି ପବନ ବେଗରେ ସେଠାରେ ପହଞ୍ଚିଗଲା। ଆଗରେ ଠିଆହୋଇ ସେ କଟମଟ କରି ଚାହିଁଛି। ଭାଲୁଆ କହିଲା, "ଆଉ ଚାହୁଁଚ କଣ ? ଆଜିକି ଠିକ୍ ସାତ ବର୍ଷ ପୂରିଗଲା।"

—"ତୁ ମୋ ହାତରୁ ବର୍ତ୍ତିଗଲୁ। ହଉ, ହଉ, ନେ" —କହି ସଇତାନ ଭାଲୁଆକୁ ତା ପାଇକ ପୋଷାକ ଫେରାଇ ଦେଇ ନିଜର ଶାଗୁଆ କୋଟ୍‌ଟି ନେଇଗଲା। ଭାଲୁଆ କହିଲା, ""ଆଉ ମୋ ଦେହରେ ଏ ଯେଉଁ ସାତ ବରଷର ମଇଳା ଜମିଛି, ଯାକୁ କିଏସେ ଧୋଇ ସଫା କରିବ ? ଏ ନିଶଦାଢ଼ି ଯାହା ବଢ଼ିଛି, ଯାକୁ କିଏସେ ଖିଅର କରି ସଫା କରିବ ?"

ଏବକୁ ତ ପାଇକର ଜିତାପଟ— ସଇତାନ ଯେତେ ଗବେଇଖବେଇ ହେଲେ କଣ କରିବ ? ବାଧହୋଇ ପାଣି ଆଣି ତାକୁ ଗାଧୋଇ-ପାଧୋଇ ସଫାସୁତୁରା କଲା। ତା ନିଶଦାଢ଼ି ଖିଅର କରି ସଫା କଲା। ଏଥର ପାଇକଟି ଦେଖାଗଲା ସତେ ଯେପରି ସେ କେଉଁ ରାଜ୍ୟର ସେନାପତି ! ସେ ସଇତାନକୁ ପଚାରିଲା, "ତା' ପର କଥା ?"

ସଇତାନ କହିଲା, "ଏଥର ତୁ ଯେଉଁ ଧନ୍ଦାରେ ହାତ ଦେବୁ, ସେଥିରେ ଲାଭ ପାଇବୁ। ତୋ ପକେଟ ସବୁବେଳେ ଭରପୂର ହୋଇ ରହିଥିବ।" ଏତିକି କହି ସଇତାନ ଉଭାନ ହୋଇଗଲା। ପାଇକ ବୀର ମନଖୁସିରେ ଚାଲିଆସିଲା ଏକ ସହରକୁ। ସେଠାରେ ମଖମଲ କନାର ପୋଷାକପତ୍ର କିଣି, ଗୋଟିଏ ନୂଆ ଘୋଡ଼ା ଗାଡ଼ିରେ ବସି ଯାଇ ରାଜକୁମାର ଭଳି ସେହି ବୁଢ଼ା ଘରେ ପହଞ୍ଚିଗଲା— ଯାହାର ସାନ ଝିଅ ସହିତ ତାର ନିର୍ବନ୍ଧ ହୋଇଥିଲା। ସେ ଯେ ସେହି ଭାଲୁଆ, ତାହା କେହି ଜାଣିପାରିଲେ ନାହିଁ। କିଏ ଜଣେ ବଡ଼ଲୋକ ଆସିଛନ୍ତି ଭାବି ବୁଢ଼ା ତାଙ୍କୁ ଘରକୁ ପାଛୋଟିନେଲା। ସେତେବେଳକୁ ବୁଢ଼ା ବେପାର-ବଣିଜ କରି ଧନୀ ହୋଇଗଲାଣି। ତାର ଖୁବ୍ ଚର୍ଚ୍ଚା କଲେ। ବଡ଼ ଦୁଇ ଭଉଣୀ ତ ତା ଦୁଇପାଖରେ; ତେଣୁ ଅତିଥି-ଚର୍ଚ୍ଚାରେ ଅଭାବ ରହିଲା ନାହିଁ। ବୁଢ଼ାର ଝିଅମାନେ ଆସି ବସିପଡ଼ିଲେ— ସତେ ଯେପରି କେବର ପୁରୁଣା

ବନ୍ଧୁ! କଥାଭାଷା ଚାଲିଛି; ଭାଲୁଆ ଓରଫ ପାଇକବୀର କହିଲା, "ମଉସା, ମୋ ଇଚ୍ଛା ହେଉଛି ଆପଣଙ୍କ ଘରେ ବାହା ହୁଅନ୍ତି।" ଯାହା ଘରେ ତିନିତିନିଟା ଅଭିଆଡ଼ୀ ଝିଅ ଅଛନ୍ତି, ତା କାନକୁ ତ ଏପରି କଥା ଅମୃତ ପରି ଲାଗିବ! ଏକଥା ଶୁଣି ସେ ଝିଅଙ୍କ ମତ ଲୋଡ଼ିବା ଲାଗି ତାଙ୍କୁ ଭିତରକୁ ଡାକିନେଲା। ବଡ଼ ଦୁଇ ଭଉଣୀ ସଙ୍ଗେ ସଙ୍ଗେ ବାପ ସାଥିରେ ଭିତରକୁ ଚାଲିଗଲେ; ସାନଟି କିନ୍ତୁ ଗଲା ନାହିଁ। ସେ ତ ଜଣକୁ ବର କରି ବସିଛି, ଆଉ ଜଣକୁ ବାହା ହେବାକୁ କାହିଁକି ଯାଆନ୍ତା? ସାନ ଝିଅକୁ ଏକାଟିଆ ପାଇ ଭାଲୁଆ ତା ହାତକୁ ସରବତ ଗିଲାସେ ବଢ଼ାଇଦେଲା। ସେ ଗିଲାସ ଭିତରେ ନିଜ ନିର୍ବନ୍ଧ ମୁଦିର ଫାଳକ ପକାଇଦେଇଥାଏ। ଝିଅଟି ସରବତ ପିଉ ପିଉ ମୁଦି ଫାଳକ ଦେଖି କାବା ହୋଇଗଲା। ତା ଫାଳକ ମୁଦି ସେ ଗୋଟିଏ ରେଶମ ଫିତାରେ ବାନ୍ଧି ବେକରେ ଝୁଲାଇଥାଏ। ସେ ନିଜ ମୁଦି ଫାଳକ କାଢ଼ି ଏ ଫାଳକ ସହିତ ଯୋଡ଼ିଦିଏ ତ ଠିକ୍ ଖାପ ଖାଇଗଲା। ତା ଆଖିରୁ ଆନନ୍ଦରେ ଲୁହ ଝରିପଡୁଛି ଦେଖି ଭାଲୁଆ ତା' ହାତ ଧରିପକାଇ କହିଲା, "ଆଗୋ ସୁନ୍ଦରୀ, ମୁଁ ସେହି ଭାଲୁଆ। ତୁମ ସୁକୃତରୁ ମୁଁ ପୁଣି ଥରେ ମଣିଷ ହୋଇ ପାରିଛି।"

ଏ ଦୁଇ ପ୍ରାଣୀ ହାତ ଧରାଧରି ଠିଆହୋଇଛନ୍ତି। ଘର ଭିତରୁ ବଡ଼ ଦୁଇ ଭଉଣୀ ବେଶଭୂଷା ହୋଇ ପାଇକର ମନ ଚୋରାଇବା ଲାଗି ବାହାରି ଆସିଲେ। ସାନଭଉଣୀ ବାପାଙ୍କୁ କହିଲା, "ବାପା, ଆମେ ସବୁ କେଡ଼େ ବୋକା! ଏଙ୍କୁ ଏତେବେଳଯାଏ ଆମେ ଚିହ୍ନିପାରି ନଥିଲୁ। ଏ ପରା ସେହି...!"

ବୁଢ଼ାର ଆଖି ତରାଟି ହୋଇଗଲା। ତା ମୁହଁରୁ ବାହାରିପଡ଼ିଲା, "ଭାଲୁ..."

ଭାଲୁଆ ବୁଢ଼ାକୁ ପ୍ରଣାମ କରି କହିଲା, "ହଁ ଆଜ୍ଞା, ମୁଁ ସେହି ଭାଲୁଆ—ହେଇଟି ତା ପ୍ରମାଣ।" ଏ କଥା କହି ସେ ଦୁଇଫାଳ ମୁଦି ଦେଖାଇଦେଲା। ଏ ଘଟଣା ଦେଖୁ ଦେଖୁ ବଡ଼ ଦୁଇ ଭଉଣୀ କେତେବେଳେ ଯେ ସେଠାରୁ ଖସି ପଳାଇଗଲେ, ତାହା କେହି ଜାଣି ପାରିଲେ ନାହିଁ। ସେ ଅକୃତଜ୍ଞ ଦୁଇଟା ଦଉଡ଼ିଦେଲେ କି କୂଅରେ ପଡ଼ି ମଲେ, କେଜାଣି। ସାନ ଝିଅ ସହିତ ଭାଲୁଆର ବାହାଘର ହୋଇଯିବାପରେ ସେମାନେ ଘରେ ବସିଛନ୍ତି, ହଠାତ୍ କବାଟଟା ମେଲା ହୋଇଗଲା। କିଏ ଆସିଲା ବୋଲି ଭାଲୁଆ ଚାହିଁ ଦିଏ ତ, ଦୁଆର ମୁହଁରେ ସଇତାନ ଠିଆହୋଇଛି। ସେ କହିଲା, "ଘର ଭିତରକୁ ପଶିବାକୁ ମୋର ସାହସ ପାଉନି। ହେଲେ ଗୋଟିଏ କଥା ଶୁଣ, ତୋ ଜୀବନ ସିନା ନେଇ ପାରିଲି ନାହିଁ; ତତେ ଥଟ୍ଟା କରିଥିବା ସେ ଅକୃତଜ୍ଞ ଦୁଇଟାର ଜୀବନ ନେଇଗଲି।"

ସେ ବୋଧହୁଏ ସେହି ବଡ଼ ଦୁଇ ଭଉଣୀଙ୍କ କଥା କହିଲା।

---

# ବୋତଲର ଭୂତ

ଗରିବ କାଠୁରିଆଟିଏ ଥାଏ । ସକାଳୁ ସଞ୍ଜଯାଏ କାଠ ହାଣି ପେଟ ପୋଷେ । ଏପରି କିଛିକାଳ କାମ କରି ସେ ଯେତେବେଳେ ଦି'ପଇସା ସଞ୍ଚିଲା, ସେତେବେଳେ ପୁଅକୁ କହିଲା "ବାପ ରେ, ତୁ ମୋର ଏକୋଇର ସଙ୍ଖାଳି । ଦୂବଲା ପତରଟିଏ । ତୁ ଆଉ ଏ କାଠୁରିଆ କାମ କରନା । ଚାଲ, ମୁଁ ତତେ ଚାହାଳୀରେ ନାଆଁ ଲେଖାଇଦେବି ଯେ ଦି'ଅକ୍ଷର ପଢ଼ିବୁ । ଦି'ଅକ୍ଷର ପଢ଼ିଲେ ଭଲ ବୁଦ୍ଧି ହେବ । ବୁଦ୍ଧିବଳହିଁ ବଳ । ବଡ଼ ହେଲେ ସୁଖରେ ରହିବୁ । ମୁଁ ତ ସବୁବେଳେ ଆଉ-ଇମିତି କାମ କରି ପାରିବି ନାହିଁ । ମୋ ହାତଗୋଡ଼ ପଡ଼ିଗଲାବେଳକୁ ତୁ ବାହାରି ପଡ଼ିଥିବୁ । ବୁଢ଼ାକାଳକୁ ତୁ ମୋର ସାହା ହେବୁ ।"

ପୁଅ ବାପ କଥା ଘେନିଲା । ଚାହାଳୀରେ ନାଆଁ ଲେଖାଇଲା । ଚାହାଳୀ ପାଠ ସାରି ସହରର ବଡ଼ ବିଦ୍ୟାଳୟକୁ ଗଲା । ସେଠାରେ ଖର୍ଚ୍ଚ ବେଶି । ଦୁଇଟି ବର୍ଷ ପଢ଼ିଛି କି ନାହିଁ, ବାପର ପାଣ୍ଠିପତ୍ର ଶେଷ ହୋଇଗଲା । ଘରେ ତ ଦି'ବେଳା ଦି'ମୁଠା ଖାଇବାକୁ ନାହିଁ; ପୁଅକୁ ଆଉ ପାଠ ପଢ଼ାଇବ କେତେ ? ପୁଅଟି ବାଧ ହୋଇ ନାଆଁ କଟାଇ ଘରକୁ ପଳାଇ ଆସିଲା । ବାପ ବୁଢ଼ା ହତାଶ ହୋଇ କହିଲା, "ଧନ ରେ, ତତେ ଦି'ଅକ୍ଷର ପଢ଼ାଇବି ବୋଲି ବଡ଼ ଆଶା କରିଥିଲି; କିନ୍ତୁ ଏ ମହରଗ କାଳକୁ ମୁଁ ଯାହା ଦି'ପଇସା କମାଉଛି, ସେତକ ଘରଖର୍ଚ୍ଚକୁ ନିଅଣ୍ଟ । କଣ ଆଉ କରିବି କହ ?"

ପୁଅ କହିଲା, "ବାପା, ଚିନ୍ତା କରନି । ଭଗବାନଙ୍କ ବରାଦ ଥିଲେ ଏତିକି ପାଠରେ ବି ଚଳିଯିବି ।" ତା' ପରଦିନ ବାପ ଯେତେବେଳେ କୁରାଢ଼ି ନେଇ କାଠ କାଟିବା ଲାଗି ବଣକୁ ବାହାରିଲା, ପୁଅ କହିଲା, "ବାପା, ମୁଁ ତୁମ ସାଥିରେ ଯିବି; ତୁମ କାମରେ ସାହାଯ୍ୟ କରିବି ।" ବାପ କହିଲା, "ନାହିଁ ରେ ଧନ ! ଏ ବଡ଼ କଷ୍ଟ କାମ, ତୋର ଏଥିରେ ଅଭ୍ୟାସ ନାହିଁ; ତୁ ପାରିବୁ ନାହିଁ । ତୋ ଦେହରେ ଏତେ ପରିଶ୍ରମ ଯିବ ନାହିଁ । ପୁଣି ଆମ ଘରେ ଦେଖୁଛୁ କୁରାଢ଼ି ବୋଲି ଗୋଟିଏ, ଆଉ ଗୋଟିଏ କିଣିବାକୁ ପଇସାପତ୍ର ବଳୁନି ।" ଏ କଥା ଶୁଣି ପୁଅ କହିଲା, "ପଡ଼ିଶା ଘରୁ କୁରାଢ଼ିଟିଏ ମାଗିଥାଅ । ଜଣକ ଜାଗାରେ ଦି' ଜଣ କାମ କଲେ ନିଶ୍ଚୟ ଦି'ପଇସା ଅଧିକ ମିଳିବ । ସେଇଥିରେ ଆମେ ଆଉ ଗୋଟିଏ କୁରାଢ଼ି କିଣିପକାଇବା ।"

ପୁଅ କଥା ଭାଙ୍ଗି ନ ପାରି ବାପ ପଡ଼ିଶା ଘରୁ କୁରାଢ଼ିଟିଏ ମାଗିଆଣିଲା । ଦିହେଁ ବଣକୁ ଯାଇ କାଠ ହାଣିଲେ । ପୁଅଟି ଭାରି ଫୂର୍ତ୍ତିରେ କାମ କରୁଥାଏ ।

ସକାଳ ଯାଇ ଯେତେବେଳେ ମୁଣ୍ଡ ଉପରକୁ ବେଳ ଉଠିଲା, ସେତେବେଳେ ବାପ କହିଲା, ''ହାଲିଆ ଲାଗିଲାଣି। କାମ ବନ୍ଦ କର। ଆସେ, ରୁଟି ଦି' ଦି' ଖଣ୍ଡ ଖାଇଦେଇ ଟିକିଏ ହାଲିଆ ମାରିବା। ବେଳ ଗଡ଼େଇ ପୁଣି ଦି'ଖଣ୍ଡ କାଠ ଚିରିବା।'' ପୁଅ କିନ୍ତୁ ତା ରୁଟି ଦି'ଖଣ୍ଡ ଧରି କହିଲା, ''ତମେ ବସି ହାଲିଆ ମାରୁଥାଅ! ମୁଁ ଯାଇ ବଣ ବୁଲି ଚଢ଼େଇ ବସା ଦେଖିବି।''

ବାପ କହିଲା, ''ବୋକାଟେ କି ରେ! ମିଛଟାରେ ଏଣେତେଣେ ବୁଲିବୁ। ହାଲିଆ ନ ମାରିଲେ ଗୋଡ଼ହାତ ଦରଜ ହୋଇଯିବ ଯେ କାଲିକି ଆଉ ଉଠିପାରିବୁନାହିଁ। ଆସ, ଏଇଠି ମୋ ପାଖରେ ବସେ।''

ପୁଅ ସେ କଥା ନ ଶୁଣି ତା ରୁଟି ଦି'ଖଣ୍ଡ ଖାଇ ଖାଇ ବଣ ଭିତରେ ପଶିଗଲା। ଏ ଗଛକୁ ସେ ଗଛ ହୋଇ ଚଢ଼େଇ ବସା ଖୋଜୁ ଖୋଜୁ ସେ ଯାଇ ଗୋଟିଏ ମସ୍ତବଡ଼ ଓକ୍ ଗଛ ପାଖରେ ପହଞ୍ଚିଗଲା। ସେଇଟା କେତେଶହ ବର୍ଷର ଗଛ କେଜାଣି, ଡାଳପତ୍ର ମେଲାଇ, ଚେର ଶିଅ ପକାଇ ସେ ଗଛଟି ଗୁଡ଼ାଏ ଜାଗା ମାଡ଼ି ବସିଥାଏ। ସେ ଗଛରେ କେତେ କୋରଡ଼, କେତେ ଗାତ ଥାଏ, ତାର ଆଉ କଳନା ନାହିଁ। ସେ ଭିତରେ କେଉଁଠି ଚଢ଼େଇ ବସାରେ ଅଣ୍ଡା ଥିବ ବୋଲି ଖୋଜୁ ଖୋଜୁ କାଠୁରିଆ ପୁଅ ଶୁଣିଲା, ସେପାଖରୁ କେହି ଜଣେ କହୁଛି, ''ହେ, ମତେ ଟିକିଏ ଖୋଲିଦିଅ ହେ, ମତେ ଟିକିଏ ଖୋଲିଦିଅ!'' ପାଖରେ ତ ଲୋକବାକ ନାହିଁ; କିଏ ଏପରି ବିକଳ ହୋଇ ଡାକୁଛି ବୋଲି ସେ ପଚାରିଲା, ''ଆରେ ତୁ କିଏ, କେଉଁଠି ଅଛୁ?''

ଶୁଣାଗଲା, ''ମୁଁ ସେ ଉପରେ ନାହିଁ, ଏହି ତଳେ ଚେର ପାଖ କୋରଡ଼ରେ ଅଛି।'' ଚାହୁଁ ଚାହୁଁ ସେ ପୁଅ ଦେଖିଲା, ଓକ୍ ଗଛର ମୂଳରେ ଗୋଟିଏ କୋରଡ଼ ଭିତରେ ଗୋଟିଏ ବୋତଲ ଥୁଆହୋଇଛି। ସେହି ବୋତଲ ଭିତରୁ କେହି ବିକଳ ହୋଇ କହୁଛି, 'ହେ, ମତେ ଟିକିଏ ଖୋଲିଦିଅ।'

ଏ ପୁଅ ବୋତଲଟି ଆଣି ଦେଖେ ତ ସେ ଭିତରେ ଗୋଟିଏ ବେଙ୍ଗ ପରି ଜୀବ ଛଟରପଟର ହେଉଛି; ମଝି-ମଝିରେ ବିକଳ ହୋଇ ଏପରି ଡାକୁଛି। କାଠୁରିଆ ପୁଅ ମନରେ ଦୟା ହେଲା। ସେ ବୋତଲର ଠିପିଟି ଖୋଲିଦେଲା। ସଙ୍ଗେ ସଙ୍ଗେ ସେହି ବେଙ୍ଗ ପରି ଜୀବଟି ବାହାରକୁ ଚାଲିଆସି ସଁ-ସଁ ଗର୍ଜନ ଆରମ୍ଭ କରିଦେଲା। 'କି ରେ, କଥା କଣ' ବୋଲି ଏ ପୁଅ ଚାହିଁଛି, ସେ ବେଙ୍ଗ ଫୁଲି ଫୁଲି ଏପରି ବିରାଟ ଆକାର ଧରିଲା ଯେ ଓକ୍ ଗଛଟାର ଅଧାଯାଏ ମାଡ଼ିବସିଲା। କାଠୁରିଆ ପୁଅ ଦେଖିଲା, ସେଇଟା ନିଶ୍ଚୟ ଗୋଟାଏ ଭୂତ।

ଭୂତ କହିଲା, ''ଏ ଟୋକା! ମତେ ଯେଉଁ ଖୋଲିଦେଲୁ, ଏ କାମର କି ପୁରସ୍କାର ଜାଣିଛୁ?''

କାଠରିଆପୁଅ ତ ପାଠୁଆ ପିଲା– ସେ ନିଡ଼ର ହୋଇ କହିଲା, "ତୁ କି ପୁରସ୍କାର ଦେବୁ, ସେକଥା ମୁଁ କିପରି ଜାଣିବି ?"

ଭୂତ କହିଲା, "ମୁଁ ତୋର ତୋଟି ଚିପି ମାରିଦେବି।"

ପାଠୁଆ ପୁଅ କହିଲା, "ତା' ହେଲେ ସେ କଥା ତୁ ମତେ ଆଗରୁ କହିଲୁ ନାହିଁ? ତୁ ତୋର ବୋତଲ ଭିତରେ ବସି କାନ୍ଦୁଥାନ୍ତୁ– ମୁଁ ତତେ ଖୋଲି ନ ଥାନ୍ତି। ତଥାପି ମୁଁ ତୋ କଥା ଶୁଣିବି ନାହିଁ। ଖାଲି ତୁ କହିଲେ ତ ହେବ ନାହିଁ, ଚାଲିଲୁ ବାକି ପାଞ୍ଚଜଣଙ୍କୁ ପଚାରିବା।"

ଭୂତ କହିଲା, "ଯା ଯା, ମୁଁ ଏତେ ଲୋକଙ୍କୁ ପଚାରିବାକୁ ଏଣେତେଣେ ଯାଇ ପାରିବି ନାହିଁ। ତୁ କାମ କଲୁ, ତୁ ହାତେ ହାତେ ଫଳ ପାଇବୁ। କଣ ଭାବିଥିଲୁ, ମତେ କେହି ଦୟା କରି ବୋତଲ ଭିତରେ ଏତେ ଦିନ ବନ୍ଦ କରି ରଖିଥିଲା ? ମୁଁ କିଏ ଜାଣିଛୁଟି ? ମୁଁ ହେଉଛି ବ୍ରହ୍ମରାକ୍ଷସ। ମତେ ଦଣ୍ଡ ଦେବା ଲାଗି ବନ୍ଦ କରି ରଖିଦେଇଥିଲେ। ତୁ ମତେ ଖୋଲିଲୁ, ମୁଁ ତୋର ତୋଟି ଚିପି ମାରିଦେବି। ଶୀଘ୍ର ଆସ।"

ପାଠୁଆ ପୁଅ କହିଲା, "ରହ ମ, କହିଲା ଆସ! ଇମିତି ତରତରରେ ଏ ସବୁ କାମ ହୁଏନି। ତତେ ଯିଏ ଖୋଲିଲା, ତୁ ତାର ତୋଟି ଚିପି ମାରିଦେବୁ ବୋଲି କହୁଛୁ ଯେ, ତତେ କିଏ ଖୋଲିଲା ? ମୁଁ ତ ବୋତଲଟା ଖୋଲିଲି; ଦେଖିଲାବେଳକୁ ତୁ ଓକ୍ ଗଛର ଅଧେ ହୋଇଛୁ। ସେ ପାଥାକିଆ ବୋତଲଟାରେ ତୁ ଥିଲୁ ବୋଲି ମୋର ବିଶ୍ୱାସ ହେଉନି।"

ଭୂତ କହିଲା, "ବିଶ୍ୱାସ ହେଉନି ? ମୁଁ ତେବେ କଣ ମିଛ କହୁଛି ?"

ପାଠୁଆ ପୁଅ କହିଲା, "ତାହା ମିଛ କି ?"

–"ମୋଟେ ନୁହେଁ।"

–"ସତ ଯଦି କହୁଛୁ, କାହିଁ ସେ ବୋତଲ ଭିତରେ ପଶିଲୁ! ଯଦି ତୁ ବୋତଲ ଭିତରେ ପଶିଯିବୁ, ତେବେ ଯାଇ ଜାଣିବି ଯେ ତୁ ସତିଆ। ତା ପରେ ତୁ ଯେପରି କହିବୁ, ସେପରି ହେବ। ମିଛଟାରେ ଗାଲୁ କଲେ ମୁଁ ଶୁଣିବା-ପୁଅ ନୁହେଁ।"

ଭୂତ କହିଲା, "ଦେଖ, ଦେଖ– ମୁଁ ପଶି ପାରୁଛି କି ନାହିଁ– ଦି'ଆଖି ମେଲେଇ ଦେଖ।" ଏପରି କହି ଭୂତ ପୁଣି ଥରେ ସଁ-ସଁ ହୋଇ ଚାହୁଁ ଚାହୁଁ ଛୋଟ ହୋଇଗଲା। ଶେଷରେ ଛୋଟ ବେଙ୍ଗଟିଏ ହୋଇ ସେ ଯିମିତି ବୋତଲ ଭିତରେ ପଶିଯାଇଛି, ପାଠୁଆ ପୁଅ ଚଟ୍‌କରି ବୋତଲରେ ଠିପିଟି ବନ୍ଦ କରିଦେଲା। ତା ପରେ ସେ ବୋତଲଟି ଯେଉଁ କୋରଡ଼ରେ ଥିଲା, ସେହି କୋରଡ଼ରେ ରଖିଦେଇ ସେଠାରୁ ପଳାଇବାକୁ ବସିଲା। ଏଥର ବୋତଲ ଭିତରେ ଭୂତ ବଡ଼

ବିକଳ ହୋଇ ଡାକପକାଇଲା, "ହେ, ମତେ ଖୋଲି ଦେଇ ଯା, ହେ ମତେ ଖୋଲି ଦେଇ ଯା।"

ଏ ପୁଅ କହିଲା, "ଥରେ ଭୁଲ କଲି ବୋଲି ଆହୁରି ଥରେ ଭୁଲ କରିବି ନା! ଥରେ ଖୋଲିଦେଇଥିଲି ଯେ, ତୁ ମୋ ଜୀବନ ନେବାକୁ ବସିଥିଲୁ; ପୁଣି ଆଉ ଥରେ ଖୋଲିଦେବି ?"

ଭୂତ କହିଲା, "ଆରେ ଭାଇ, ଯଦି ମତେ ଖୋଲିଦେବୁ, ତେବେ ତତେ ଏତେ ଦେବି ଯେ ତୁ ଜୀବନତମାମ ଭୋଗ କଲେ ବି ସରିବନାହିଁ।"

ପାଠୁଆ କହିଲା, "ନା ନା, ପ୍ରଥମ ଥର ଯିମିତି ଠକିଥିଲୁ, ଏଥର ବି ସିମିତି ଠକିଦେବୁ। ମୁଁ ତତେ ଖୋଲିବି ନାହିଁ।"

ଭୂତ କହିଲା, "ଏ ଭଳି ସୁଯୋଗ ହାତେ ହାତେ ହରାଇ ଦେ'ନା। ସତ କହୁଛି, ମୁଁ ତୋର କ୍ଷତି କରିବି ନାହିଁ। ଏଥର ସତରେ ଧନରତ୍ନ ପୁରସ୍କାର ଦେବି।" କାଠୁରିଆପୁଅ ଭାବିଲା, 'ଏଥରଟା ପରୀକ୍ଷା କରି ଦେଖିଲେ ହୁଅନ୍ତା। ଯଦି ସେ ତା କଥା ରଖେ ତେବେ ତ ଆଚ୍ଛା; ନାହିଁ ଯଦି ନ ରଖେ, ମଣିଷ-ବୁଦ୍ଧିକୁ କଣ ଭୂତ-ବୁଦ୍ଧି ବଳିଯିବ ନା ?' ଏପରି ଭାବି ସେ ବୋତଲର ଠିପି ଖୋଲିଦେଲା। ଭୂତ ସେ ଭିତରୁ ବାହାରିପଡ଼ି ନିଜ ରୂପ ଧରିପକାଇଲା। ଏ ପୁଅ କହିଲା, "କାହିଁ, କଣ ଦେବୁ ଦେ।"

ଭୂତ ତାକୁ ଖଣ୍ଡିଏ ରୁମାଲ ଦେଇ କହିଲା, "ଏ କନାଖଣ୍ଡିକ ନେ, ଯେତେ ବଡ଼ ଘାଆ ହୋଇଥାଉ ନା କାହିଁକି, ଏଥିରେ ଟିକିଏ ପଟି ବାନ୍ଧିଦେଲେ ପୂରାପୂରି ଶୁଖିଯିବ। ଏହାର ଆଉ ଗୋଟିଏ ଗୁଣ ହେଲା, ଯେକୌଣସି ଧାତୁ ଜିନିଷକୁ ଏଥିରେ ଘଷି ଦେଲେ ତାହା ରୁପା ହୋଇଯିବ।" ରୁମାଲଖଣ୍ଡିକ ଦେଇ ଭୂତ ଉଭେଇଗଲା। କାଠୁରିଆପୁଅ ସେ ଖଣ୍ଡିକ ଧରି ବାପ ପାଖକୁ ଆସିଲାବେଳକୁ ବାପ ପୁଣି ଥରେ କାଠକଟା ଆରମ୍ଭ କଲାଣି। ପୁଅକୁ ଦେଖି ବୁଢ଼ା କହିଲା, "ତୁ ଖାଲି ବଣରେ ବୁଲି ଚଗଲାମି କରୁଛୁ, କାମଦାମରେ ତୋର ମନ ନାହିଁ।"

ଏ କଥା ଶୁଣି ପୁଅ କହିଲା, "ଦେଖ, ମୁଁ କିପରି କାମ କରୁଛି। ତମେ ଟିକିଏ ସେ ପଟକୁ ଘୁଞ୍ଚି ଠିଆହୁଅ; ଯଦି ସେ ଗଛଟା ହାଣି ଶୁଆଇ ନ ଦେବି, ତେବେ ମତେ କହିବ।" ଏହା କହି ସେ କୁରାଢ଼ିଟିକୁ ଭୂତ ଦେଇଥିବା ରୁମାଲରେ ଟିକିଏ ପୋଛିଦେଲା। ତା ପରେ ଗଛ ଗଣ୍ଡିରେ ଏକ ନିର୍ଘାତିଆ ଚୋଟ ବସାଇ ଦିଏ ତ କୁରାଢ଼ିଟି ବଙ୍କା ହୋଇଗଲା। ସେ କହିଲା, "ବାପା, କୁରାଢ଼ି ତ ବଙ୍କା ହୋଇଗଲା, କାମ ଆଉ କରିବି କ'ଣ ?"

ବାପ ବ୍ୟସ୍ତ ହୋଇ କହିଲା, "ଆରେ ମୂର୍ଖ ! ଏ କଣ କଲୁ ? ପଡ଼ିଶାଘରୁ କୁରାଢ଼ିଟି ମାଗିଆଣିଥିଲି; ସେ ତ ଏବେ ଧରିବସିବ କୁରାଢ଼ି ଦିଅ, ନାହିଁ ତ

ଦାମ୍ ଦିଅ ।''

—''ଗୁଣକୁ ଦି'ଗୁଣ ଦେଇ ଶୁଝିଦେବା ।''

ବାପ କହିଲା, ''ଗୁଣକୁ ଦି' ଗୁଣ ! ଭଙ୍ଗା କୁରାଢ଼ିଟା ବିକିଲେ ଆଗ ଅଧା ଦାମ ମିଳିବ ତ ? ତୁ ଯା, ସହରରେ ସେଇଟା ବିକିଦେଇ ପଇସା ଆଣିଥିବୁ, ମୁଁ ବାକି ପଇସା ମିଶାଇ ତାକୁ ତାର ପାଉଣା ଦେଇଦେବି ।''

ପୁଅ କହିଲା, ''ମୁଁ ତ ନୂଆକରି ବଣକୁ ଆସିଛି; ମୁଁ ବାଟ ଦେଖିଛି ଯେ ପଳାଇଯିବି ? ଆସ, ତୁମେ ବି ମୋ ସାଙ୍ଗରେ ଚାଲିଆସ, ଆମର ଆଉ ଏ କାଠହଣା ଦରକାର ନାହିଁ ।''

ବାପ ପୁଅ ଉପରେ ବହେ ବିରକ୍ତ ହୋଇ ତା ସାଙ୍ଗରେ ଘରକୁ ଆସିଲା । ପୁଅ ଏଥର କୁରାଢ଼ିଟି ନେଇ ସହରକୁ ଚାଲିଲା । ଭୂତ ଦେବା ରୁମାଲରେ ପୋଛାହେବା ଫଳରେ ସେ ଲୁହା କୁରାଢ଼ି ତ ରୁପା କୁରାଢ଼ି ହୋଇଯାଇଥାଏ— ସେଇଥିପାଇଁ କୁରାଢ଼ିଟି ବଙ୍କା ହୋଇଯାଇଥିଲା । ସେ ବଣିଆପଟିଟି ଯାକ ବୁଲିଲା, କିନ୍ତୁ ଯେଉଁ ବଣିଆ ଦେଖିଲା ସେ କହିଲା, ''ଏ ତ ଖାଣ୍ଟି ରୁପା, ଏତେ ରୁପା କିଣିବାଲାଗି ଏବେ ମୋ ପାଖରେ ପଇସା ନାହିଁ । ଆଉ ଦିନେ ଆସ ।'' ଶେଷକୁ ଜଣେ ବଡ଼ ବଣିଆ ତା କୁରାଢ଼ିଟି ଓଜନ କରି କହିଲା, ''ଦାମ୍ ପାଞ୍ଚଶହ ଟଙ୍କା ହେଉଛି; କିନ୍ତୁ ମୋ ପାଖରେ ମୋଟେ ତିନିଶହ ଟଙ୍କା ଅଛି ।''

ଏ ପୁଅ କହିଲା, ''ତା' ହେଲେ ମୁଁ ତୁମକୁ ଦୁଇଶହ ଟଙ୍କା କରଜ ଦେଉଛି ବୋଲି ଧରିନିଅ, ବାକି ତିନିଶହ ଦିଅ ।'' ସେ ଏପରି ତିନିଶହ ଟଙ୍କା ଧରି ଘରକୁ ଆସୁ ଆସୁ ବାପ ପଚାରିଲା, ''କିରେ କୁରାଢ଼ି ବିକିଲୁ ?''

ପୁଅ କହିଲା, ''ହଁ ବାପା ! ନୂଆ କୁରାଢ଼ିର ଦାମ କେତେ ?''

ବାପ କହିଲା, ''ଦେଢ଼ଟଙ୍କା ।''

ପୁଅ ବାପକୁ ତିନିଟଙ୍କା ଦେଇ କହିଲା, ''ନିଅ, ପଡ଼ିଶାଘରେ ଏ ତିନିଟଙ୍କା ଦେଇଦେବ— ଦାମ ଦେଢ଼ଟଙ୍କାକୁ ଜୋରିମାନା ଦେଢ଼ଟଙ୍କା ।'' ବାପ ଆଶ୍ଚର୍ଯ୍ୟ ହୋଇ ପୁଅ ଏତେ ପଇସା କେଉଁଠୁ ଆଣିଲା ବୋଲି ପଚାରିବାରୁ, ପୁଅ ବାକି ଟଙ୍କାତକ ବାପକୁ ଦେଇ ସବୁ ଘଟଣା କହିଗଲା । ଏଥର ଦେଖ ତାଙ୍କର ଖୁସି ! ସେହିଦିନଠାରୁ ସେ କାଠୁରିଆ ଘରେ ଅଭାବ ବୋଲି ରହିଲା ନାହିଁ । ପୁଣି ସେ ଅଞ୍ଚଳରେ ଲୋକଙ୍କର ଯେତେ ଘାଆ ଘାଉଡ଼ ହେଲା, ସେ ପୁଅ ସବୁ ଭଲ କରିଦେବାରୁ ତାର ହାତଗୁଣ ଲାଗି ଲୋକେ ତାକୁ ଧନ୍ୟ ଧନ୍ୟ କରିବାକୁ ଲାଗିଲେ ।

—

# ଛେଳିଦାଢ଼ିଆ ରଜା

ଜଣେ ରଜା ଥାଆନ୍ତି ଯେ, ତାଙ୍କ ଝିଅଟି ଭା'ରି ସୁନ୍ଦରୀ। ତାର ବିବାହ ବୟସ ହେବାରୁ ଅନେକଆଡ଼ୁ ଅନେକ ବିବାହ ପ୍ରସଙ୍ଗ ଆସିଲା। ବିବାହ ପ୍ରସଙ୍ଗ ସହିତ ପୁଅର ଚିତ୍ରପଟ ଆସିଥାଏ। ରଜାଝିଅ ସେ ଚିତ୍ରପଟ ଦେଖିଦେଇ ମୁହଁ ମୋଡ଼ିଦିଏ। କହେ– ଯା ଠେଇଁ ଏ ଖୁଣ ଅଛି, ତା ଠେଇଁ ସେ ଖୁଣ ଅଛି; ଇମିତି କରି କରି କାହାକୁ ପାସଙ୍ଗରେ ପକାଇଲାନାହିଁ। ଶେଷକୁ ରଜା ଠିକ୍ କଲେ ଝିଅ ପାଇଁ ଏକ ସ୍ୱୟଂବର ସଭା କରିବେ। ସେଠାକୁ ଆଖପାଖର ସବୁ ରଜାପୁଅ; ଜମିଦାରପୁଅ, ସାଧବପୁଅ ଇତ୍ୟାଦି ଇତ୍ୟାଦିଙ୍କୁ ଡକାଇବେ। ଝିଅ ସେମାନଙ୍କୁ ଜଣ ଜଣ କରି ଦେଖିବ। ତାର ଯାହାକୁ ଇଚ୍ଛା, ତାକୁ ବରିବ। ଏପରି ଭାବି ସେ ଚାରିଆଡ଼କୁ ନିମନ୍ତ୍ରଣ ପଠାଇଦେଲେ। ସଭାଦିନ ବେଳକୁ ବାହାହେବାକୁ ଇଚ୍ଛା କରିଥିବା ଶହ ଶହ ରଜାପୁଅ, ଜମିଦାରପୁଅ, ସାଧବପୁଅ ଆସି ଜମା ହୋଇଗଲେ। ସେମାନଙ୍କୁ ଆସନ ପାଦାସନ ଦେଇ ସଭାରେ ବସାଇ ଦିଆଗଲା। ତା ପରେ ରଜାଝିଅ ତା ସଖୀମାନଙ୍କୁ ସଙ୍ଗରେ ନେଇ, ସଭା ମଧ୍ୟରେ ବୁଲିଲା। ସଖୀମାନେ ଗୋଟି ଗୋଟି କରି ଚିହ୍ନାଇ ଦେଉଥାନ୍ତି। ରଜାଝିଅ ସେମାନଙ୍କ ମୁହଁକୁ ଥରେ ଚାହିଁଦେଇ ଅପସନ୍ଦ କରି କରି ଚାଲିଥାଏ। ତା ନଜରରେ କିଏ ପୋଟଳ ପରି ଫୁଲିଯାଇଛି ତ କିଏ କାଉଁରିଆ କାଠି ପରି ପତଳା; କିଏ ବେତ ପରି ଲହକା ତ କିଏ ପୁଡୁଗ ପରି ପେଟା। କାହା ମୁହଁରେ ଜ୍ୟୋତି ନାହିଁ ତ କାହା ମୁହଁଟା ପାତିମାଙ୍କଡ଼ ପରି ନାଲିଆ। ଇମିତି ବାଛୁ ବାଛୁ ଦେଖାଗଲା କମଳଯାକ ବାଳ; କେହି ତାର ପସନ୍ଦକୁ ଆସିଲେ ନାହିଁ। ସମସ୍ତଙ୍କୁ ବେଇଜ୍ଜତ କରି ରଜାଝିଅ ଇମିତି ଥଟ୍ଟାତାମସା କଲା ଯେ ଲୋକଗୁଡ଼ାକ ଲାଜ-ଅପମାନରେ ମୁଣ୍ଡ ପୋତିଦେଲେ। ଏମିତି ହୋଇ ଜଣେ ରଜାପୁଅକୁ ସେ ଯେତେବେଳେ ଛେଳିଦାଢ଼ିଆ ବୋଲି କହିଦେଲା, ସେତେବେଳେ ଗୋଟାଏ ହସରୋଳ ଉଠିଗଲା। କଥା କଣ କି, ସେ ରାଜପୁଅ ଥୋଡ଼ିଟା ଟିକିଏ ଚୋଳିଆ। ସେଥିରେ ଅଳ୍ପ କେତୋଟି ଦାଢ଼ି ଉଠି ଲମ୍ବିଯାଇଥାଏ। ସ୍ୱୟଂବର ସଭା ଭାଙ୍ଗିଗଲା, ଯେ ଯାହା ଘରକୁ ଫେରିଗଲେ ସତ; କିନ୍ତୁ ସେହିଦିନୁ ସେ ରାଜପୁଅର ନାମ ରହିଗଲା – ଛେଳିଦାଢ଼ିଆ।

ଝିଅର ଏପରି ବ୍ୟବହାର ଦେଖି ରଜା ମନେ ମନେ ରାଗରେ ପାଚିଗଲେ। ସ୍ଥିର କରିଦେଲେ ଯେ, ରାତି ପାହି ସକାଳ ହେଲା ମାତ୍ରେ ସେ ଯେଉଁ ଭିକାରିକୁ ଆଗେ ଦେଖିବେ, ତା'ରି ସହିତ ଝିଅକୁ ବାହାଘର କରାଇ ଦେବେ– ତା

ହେଲେ ଝିଅ ଠିକ୍ ବୁଦ୍ଧି ଶିଖିବ। ତା ବାସିଦିନ କଥା। ବାପ ଝିଅ ବସି କଥାଭାଷା ହେଉଛନ୍ତି, ଶୁଣାଗଲା ନଅର ଦୁଆରେ କେନ୍ଦରା ବଜାଇ ଜଣେ ଭିକାରି ଭିକ ମାଗୁଛି। ରାଜା ସଙ୍ଗେ ସଙ୍ଗେ ଲୋକ ପଠାଇ ସେ ଭିକାରିକୁ ପାଖକୁ ଡକାଇଆଣିଲେ। ଭିକାରିଟି ବେଶୀ ବୟସର ନୁହେଁ; କିନ୍ତୁ ମୁହଁଯାକ ଦାଢ଼ି ଯେ ବଡ଼ କଦର୍ଯ୍ୟ ଦେଖାଯାଉଥାଏ। ପିନ୍ଧିଥାଏ ଖଣ୍ଡେ ଚିରା ମସିଆ ଲୁଗା; କିନ୍ତୁ କେନ୍ଦରା ବଜାଇ ବଡ଼ ସୁନ୍ଦର ଗୀତ ଗାଉଥାଏ। ରଜାଙ୍କ ଆଜ୍ଞା ହେବାରୁ ଭିକାରି ଆଉ ଗୋଟିଏ ଗୀତ ବୋଲିଲା। ଗୀତ ଶେଷରେ କହିଲା, ''ମଣିମା, ବିଦାକି ମିଳିଲେ ମୁଁ ଚାଲିଯିବି।''

ରଜା କହିଲେ, ''ତୁମକୁ ମୁଁ ଟଙ୍କା-ପଇସା ବିଦାକି ଦେବିନାହିଁ। ମୋର ଝିଅକୁ ତୁମ ହାତରେ ଦେଉଛି— ଏକୁ ନେଇଯାଅ।''

ଏ କଥା ଶୁଣି ରଜାଝିଅ ଛାନିଆ। ସେ ଆପତ୍ତି କରିବାକୁ ବସିଛି, ରଜା କହିଲେ, ''ମୋ କଥାରେ ସନ୍ଦେହ କର ନାହିଁ। ମୁଁ କାଲି ରାତିରେ ସିଦ୍ଧାନ୍ତ କରିଦେଇଛି ଯେ, ମୁଁ ପ୍ରଥମେ ଯେଉଁ ଭିକାରିକୁ ଦେଖିବି, ତା'ରି ହାତରେ ଝିଅକୁ ଦେଇଦେବି; କାରଣ ମୋ ଝିଅ ଆଖିକୁ କୌଣସି ରାଜକୁମାର ସୁନ୍ଦର ଦେଖାଗଲେନାହିଁ।''

ଝିଅ କେତେ କାନ୍ଦିଲା, କେତେ ଗୋଡ଼ହାତ ଧରିଲା। ପାତ୍ର ମନ୍ତ୍ରୀ ଆସି କେତେ ବୁଝାଇଲେ। କୌଣସିଥିରେ କିଛି ହେଲା ନାହିଁ। ରଜା ପୁରୋହିତଙ୍କୁ ଡକାଇ ସେହିଦିନ ବିବାହ କାର୍ଯ୍ୟ ଶେଷ କରିଦେଲେ। ବିବାହ ଶେଷରେ ରଜା ଝିଅକୁ କହିଲେ, ''ଏଥର ତୁ ଜଣେ ଭିକାରିର ଭାର୍ଯ୍ୟା। ତୋର ଆଉ ଏ ନଅରରେ ସ୍ଥାନ ନାହିଁ। ତୋ ସ୍ୱାମୀଘରକୁ ତୁ ପଳା।''

ଭିକାରି ସଙ୍ଗେ ସଙ୍ଗେ ରଜାଝିଅର ହାତ ଧରି ନଅରରୁ ପଳାଇଗଲା। ନଗର ପାରହୋଇ ଯାଉ ଯାଉ ବାଟରେ ଗୋଟିଏ ସୁନ୍ଦର ବଣ ପଡ଼ିଲା। ବଣରେ ଫଳଗଛମାନଙ୍କରେ ପାଚିଲା ଫଳସବୁ ଝୁଲୁଥାଏ। ଜାତିଜାତିକା ଚଢ଼େଇ ଗୀତ ଗାଇ ଉଡୁଥାନ୍ତି। ହରିଣ ମିରିଗ ଦଉଡୁଥାନ୍ତି। ସେ ସବୁ ଦେଖି ରଜାଝିଅ କହିଲା, ''କି ସୁନ୍ଦର ବଣ ହୋଇଛି! ଏ ବଣଟି କାହାର?''

ଭିକାରି କହିଲା, ''ଏ ବଣ ହେଉଛି ସେହି ଛେଳିଦାଢ଼ିଆ ରଜାଙ୍କର। ତୁ ତାଙ୍କୁ ବାହାହୋଇଥିଲେ ଏ ବଣର ମାଲିକିଆଣୀ ହୋଇଥାନ୍ତୁ।''

ରଜାଝିଅ କହିଲା, ''ମୋର ତ କପାଳ ମନ୍ଦ, ଛେଳିଦାଢ଼ିଆ ରଜାଙ୍କୁ ବାହାହୋଇଥିଲେ ମୁଁ କେଡ଼େ ସୁଖରେ ରହି ନ ଥାନ୍ତି!''

ବଣ ପାର ହୋଇ ଯାଉ ଯାଉ ଗୋଟିଏ ସୁନ୍ଦର ଘାସ ପଡ଼ିଆ ପଡ଼ିଲା। ରଜାଝିଅ ପଚାରିଲା, ''ଏ ପଡ଼ିଆଟି କାହାର? ବଡ଼ ସୁନ୍ଦର ହୋଇଛି ତ।''

ଭିକାରି କହିଲା, "ଏ ହେଉଚି ଛେଳିଦାଢ଼ିଆ ରଜାଙ୍କର ଘୋଡ଼ାଦଉଡ଼ ପଡ଼ିଆ। ତୁ ତାଙ୍କୁ ବାହା ହୋଇଥିଲେ ତୁ ବି ଏ ପଡ଼ିଆର ମାଲିକିଆଣୀ ହୋଇଥାନ୍ତୁ।"

ରଜାଝିଅ କହିଲା, "ହାୟ ରେ ମୋ କପାଳ! ଛେଳିଦାଢ଼ିଆ ରଜାଙ୍କୁ ବାହା ହୋଇଥିଲେ ମୁଁ କାହିଁକି ଏ ଦୁଃଖ ପାଆନ୍ତି!"

ପଡ଼ିଆ ପାର ହୋଇ ଯାଉ ଯାଉ ସେମାନେ ଗୋଟିଏ ବଡ଼ ନଗରରେ ପହଞ୍ଚିଲେ। ନଗରର କୋଠାବାଡ଼ି, ମେଢ଼ମଣ୍ଡପ, ମନ୍ଦିର ଦେଖି ଦେଖି ଯାଉ ଯାଉ ରଜାଝିଅ ପଚାରିଲା, "ଏ ନଗରଟି କାହାର?"

ଭିକାରି କହିଲା, "ଏଇଟା ଛେଳିଦାଢ଼ିଆ ରଜାଙ୍କର ନଗର। ତାଙ୍କୁ ବାହାହୋଇଥିଲେ ତୁ ବି ଏ ନଗରର ମାଲିକିଆଣୀ ହୋଇଥାନ୍ତୁ।"

ରଜାଝିଅ କହିଲା, "ହାୟ ରେ ମୋ ପୋଡ଼ା କପାଳ, ମୁଁ ଛେଳିଦାଢ଼ିଆ ରଜାଙ୍କୁ ବାହା ନ ହେଲି କାହିଁକି?"

ଭିକାରି କହିଲା, "ବୁଝିଲୁ, ତୋ କଥାଗୁଡ଼ାକ ମତେ ଜମା ଭଲଲାଗୁନି। ଅନ୍ୟ ପୁରୁଷକୁ ବାହା ହୋଇଥିଲେ ସୁଖରେ ରହନ୍ତୁ ବୋଲି କଣ ଇମିତି ସବୁବେଳେ କହିହେଉଚୁ? ତୋ ଭଳି ସ୍ତ୍ରୀକୁ କଣ ମୋ ଭଳି ସ୍ୱାମୀ ଠିକ୍ ହୋଇନି?" ଏପରି କଥାଭାଷା ହୋଇ ଯାଉ ଯାଉ ଭିକାରି ଯାଇ ଗୋଟିଏ ଛୋଟ ଭଙ୍ଗା କୁଡ଼ିଆ ପାଖରେ ଅଟକିଗଲା। ରଜାଝିଅ ପଚାରିଲା, "ଏଠି କାହିଁକି ଠିଆହେଲ? ହେ ଦଇବ! କେଡ଼େ ବଙ୍କଟେ ଘର ହୋଇଛି! ସେଥିରେ ପୁଣି କାନ୍ଥ ଫାଟି ଆଁ କରିଛି। ଛପର ତ ଉଡ଼ିଗଲାଣି! ଏଠି କିଏ ରହୁଛି?"

ଭିକାରି କହିଲା, "ଆଲୋ, ଏଇଟା ମୋ ଘର— ଆମ ଘର। ଆମେ ଏଇଠି ରହିବା, ଆସେ।" ଭିକାରି କବାଟ ଖୋଲି ଘର ଭିତରେ ପଶିଲା। ରଜାଝିଅ ବଡ଼ କଷ୍ଟରେ ମୁଣ୍ଡ ନୁଆଁଇ ଘର ଭିତରକୁ ଯାଇ ଦେଖେ ତ, ଭିତରଟା ଅଳିଆରେ ପୂର୍ଣ୍ଣ; ଜିନିଷପତ୍ରଗୁଡ଼ାକ ବିଛେଇ ହୋଇ ପଡ଼ିଛି। ସେ ନାକ ଟେକିଦେଇ କହିଲା, "ଇଃ, କି ଅସନା! କାହିଁ, ଚାକରବାକର ସବୁ ଗଲେ କୁଆଡ଼େ? ଏଗୁଡ଼ାକ ପରିଷ୍କାର କରାଅ।"

ଭିକାରି କହିଲା, "ଚାକରବାକର? ହଇ ଲୋ, ଆମ ଘରେ ପୁଣି ଚାକରବାକର ଆସିବେ କେଉଁଠୁ? ଆମ କାମ ଆମକୁ କରିବାକୁ ପଡ଼ିବ। କାହିଁ, ଘର ଝାଡୁ କରି ଶୀଘ୍ର ଚୁଲି ଲଗା। କଣ ଟିକିଏ ରନ୍ଧାବଢ଼ା କରିବୁନି, ମତେ ଭାରି ଭୋକ ହେଲାଣି ଯେ।" କିନ୍ତୁ ରଜାଝିଅ କି ଚୁଲି ଜାଳିଜାଣେ ନା ରାନ୍ଧିବାଢ଼ି ଜାଣେ— ଭିକାରି ହାତ ନ ଦେଲେ କୌଣସି କାମ ହେଲା ନାହିଁ। କୌଣସି ପ୍ରକାରେ ରାନ୍ଧିବାଢ଼ି ଦୋଓଟି ଖାଇ ଦି' ପ୍ରାଣୀ ଶୋଇପଡ଼ିଲେ। ବାଟ ଚାଲି ଚାଲି ରଜାଝିଅ ହାଲିଆ ହୋଇଯାଇଥାଏ। ନିଘୋଡ଼ ନିଦରେ ଶୋଇଛି। ରାତି ନ ପାହୁଣୁ ଭିକାରି

ତାକୁ ଶେଯରୁ ଉଠାଇଦେଲା। କହିଲା, "ତୁ ଇମିତି ଶୋଇଲେ ଘରକାମ କରିବ କିଏ ?" ବିଚାରୀ ବଡ଼ କଷ୍ଟରେ ଉଠି କାମଦାମ ଆରମ୍ଭ କଲା। ଏପରି ରାନ୍ଧିବାଢ଼ି ଖାଉ ଖାଉ ଘରେ ଯାହା ଦି'ମୁଠା ଥିଲା, ସେତକ ଦିନ ଦୁଇଟା ଭିତରେ ସରିଗଲା। ଏଥର ଭିକାରି ରଜାଝିଅକୁ କହିଲା, "ବୁଝିଲୁ, ଇମିତି ବସି ଖାଇଲେ ଚଳିବ ନାହିଁ। ମୁଁ ଦିନଯାକ ବୁଲି ଭିକ ମାଗିବି, ତୁ ଘରେ ବସି ଟୋକେଇ ଭୋଗେଇ ବୁଣ। ମୁଁ ବେତ ବାଉଁଶ କିଛି ଆଣି ତତେ କାମ ଧରେଇଦିଏ !"

ଭିକାରି ବେତ ବାଉଁଶ ଆଣିଦେଲା, ରଜାଝିଅ ଟୋକେଇ ବୁଣିବସିଲା। କିନ୍ତୁ ତାକୁ ତ ସେ କାମ ଆସେନି, ବୁଣୁ ବୁଣୁ ବାଉଁଶ ପାତିଆ ବାଜି ତା ହାତରୁ ଚିରୁଡ଼େ କାଟିହୋଇଗଲା। ସନ୍ଧ୍ୟାବେଳକୁ ଭିକାରି ଘରକୁ ଫେରି ଦେଖେ ତ ରଜାଝିଅ ବସି କାନ୍ଦୁଚି। ଭିକାରି କହିଲା, "ନା, ଦେଖୁଛି ତୋ ଦେଇ ଏ କାମ ହେବ ନାହିଁ। ତୁ ବରଂ ଘରେ ବସି ସୂତା କାଟ।" ଏହା କହି ସେ କିଛି ତୁଳା ଓ ତାକୁଡ଼ି ଆଣିଦେଲା। କିନ୍ତୁ ସୂତା କାଟୁ କାଟୁ ପାକଳ ସୂତାରେ ରଜାଝିଅର ଆଙ୍ଗୁଠି ଟିପ ଚିରିହୋଇଗଲା। ଭିକାରି କହିଲା, "ତୁ'ଟା ନିକମାଟାଏ; ତୋ ଦେଇ କୌଣସି କାମ ହେବ ନାହିଁ। ତତେ ବାହାହୋଇ ମୁଁ ବଡ଼ ଭୁଲ କଲି। ଯାହା ହେବାର ହେଲାଣି, ମୁଁ କୁମ୍ଭାର ସାହିରୁ କିଛି ହାଣ୍ଡି ଆଟିକା କିଣି ଆଣୁଛି, ତୁ ସେତକ ନେଇ ବଜାରକୁ ଯା, ଗୋଟିଏ ହାଣ୍ଡି ଆଟିକା ଦୋକାନ ଖୋଲେ— ବସି ବିକିବୁ।"

ରଜାଝିଅ ଭାବିଲା, "ହାୟ ରେ, ମୋ କପାଳରେ ଏଇଆ ଲେଖାଥିଲା ? ଆମ ରାଜ୍ୟର କେହି ଯଦି ଏଠିକି ଆସିଥିବ, ମୁଁ ହାଣ୍ଡି ଆଟିକା ବିକୁଥିବା ଦେଖିଲେ ସେ କି ଥଟ୍ଟା ନ କରିବ !" କିନ୍ତୁ ତା ଭାବିବାରେ କଣ ଅଛି ? କିଛି ଗୋଟିଏ ଧନ୍ଦା ନ ଧରିଲେ ଏଣେ ଭୋକ-ଉପବାସରେ ମରିବାକୁ ପଡ଼ିବ ଯେ ! ବାଧ ହୋଇ ହାଣ୍ଡି ଆଟିକା ଦୋକାନ ଖୋଲିଲା। ବଜାରର ଗୋଟିଏ କୋଣରେ ଦୋକାନଟି ଥାଏ; କିନ୍ତୁ ଏଡ଼େ ସୁନ୍ଦର ସ୍ତ୍ରୀଟିଏ ବସି ହାଣ୍ଡି ବିକୁଛି ଦେଖି ସେ ଦୋକାନକୁ ଗରାଖ ଉପରେ ଗରାଖ ଆସିଲେ। ତା ସୁନ୍ଦର ମୁହଁକୁ ଦେଖି ଚାରି ପଇସାର ହାଣ୍ଡିକୁ ଛ' ପଇସା ଦେଇ କିଣିଲେ; କେହି କେହି ତ ପଇସା ଗଣିଦେଇ ହାଣ୍ଡି ନେବାକୁ ବି ଭୁଲିଗଲେ। ବେଶ୍ ଦୁଇ ପଇସା ମିଳିଲା। ଏପରି କିଛି ଦିନ ଯିବା ପରେ ତା ସ୍ୱାମୀ ଠେକି, କଳସି, ମାଠିଆ,. ସୁରେଇ, ଓଳି, ସରା କରି ଗୁଡ଼ାଏ ମାଟି ଜିନିଷ କିଣିଆଣି ଦେଲା। ସ୍ତ୍ରୀକୁ କହିଲା, "ତୋ ହାତରେ ତ ଭଲ ବିକାକିଣା ହେଉଛି— ଏ ସବୁ ରଖି ଦୋକାନକୁ ଟିକିଏ ବଢ଼େଇଦେ।"

ରଜାଝିଅ ଏ ସବୁ ନୂଆ ଜିନିଷ ସଜାଇ ବଜାର କୋଣରେ ଦୋକାନ ମେଲାଇ ବସିଛି— ସେଦିନ କଣ ହେଲା ନା, ଜଣେ ମଦୁଆ ସିପାହି ନିଶାଭୋଳରେ

ଘୋଡ଼ା ଚଢ଼ି ଆସୁ ଆସୁ ଘୋଡ଼ାକୁ ଇମିତି ଛାଟେ ମାରିଦେଲା ଯେ ଘୋଡ଼ାଟା ଏ ହାଣ୍ଡି ଆଟିକା ଦୋକାନ ଭିତରେ ପଶିଗଲା। ଭଡ଼ଭାଡ଼ ହୋଇ ସବୁଗୁଡ଼ାକ ଜିନିଷ ଭାଙ୍ଗିଗଲା। ଲୋକେ ହାଁ ହାଁ କରୁ କରୁ ସେ ସିପାହି ଘୋଡ଼ା ଛୁଟାଇ କେଉଁଆଡ଼େ ପଳାଇଗଲା। ଏତକ ପଇସା ପାଣିରେ ପଡ଼ିଗଲା ଦେଖି ରଜାଝିଅ ଆଖିରୁ ଲୁହ ଝରିପଡ଼ିଲା। ସେ ବିଚାରୀ କାନ୍ଦି କାନ୍ଦି ଯାଇ ଘରେ ପହଞ୍ଚିବାରୁ ତା ସ୍ୱାମୀ ପଚାରିଲା, ''କିଲୋ, କଥା କଣ?'' ରଜାଝିଅ ଯେତେବେଳେ କହିଲା ଯେ ଘୋଡ଼ା ଟାପୁ ବାଜି ସବୁ ହାଣ୍ଡି, ଆଟିକା, କଳସି, ମାଠିଆ ଭାଙ୍ଗିଗଲା, ସେତେବେଳେ ଭିକାରି କହିଲା, ''ତୋର ଅକଲ ବୋଲି ଟିକିଏ ବି ନାହିଁ। ହଇ ଲୋ, ବଜାର କୋଣରେ କେହି କେବେ ଏଭଳି ଦୋକାନ କରେ? ତୋର ବୋକାମିରୁ ଲାଭ ଗଲା; ମୂଳ ବି ଗଲା। ଏଥର କଣ ଖାଇବୁ ଖା!''

ଦୁଇଦିନ ପରେ ଭିକାରି ଆସି କହିଲା, ''ମୁଁ ତୋ ପାଇଁ ରଜାଘର ଖନ୍ଦାଶାଳରେ ଚାକରାଣୀ କାମଟିଏ ବୁଝିଦେଇଛି। ଚାଲ, ସେଇଠି ବୋଲହାକ କରି ବାସନ ମାଜିବୁ। କାମ ହାଲୁକା। ଖାଇବା-ପିଇବାରେ ବି ଅଭାବ ରହିବ ନାହିଁ; କାରଣ ରଜାରାଜୁଡ଼ା ଘରେ ଖାଆନ୍ତି ଯେତିକି, ଫିଙ୍ଗନ୍ତି ତା ତହୁଁ ବେଶି। ଅଇଁଠା ଅସକରା ବୋଲି ନାକ ନ ଟେକି ଗୋଟାଇ ଆଣିପାରିଲେ ଆମକୁ ବଳିବ।''

ରଜାଝିଅ, କେତେ ଅୟସରେ ବଢ଼ି ନ ଥିଲା! ନିଜ ବଡ଼ିମାରୁ ଏସବୁ ହାତେ ହାତେ ଫଳିଛି। କାହାକୁ ଆଉ ଦୋଷ ଦେବ? ଲାଜ-ଅପମାନରେ ମୁଣ୍ଡ ପୋତି ସେ ଯାଇ ରଜାଘର ଖନ୍ଦାଶାଳରେ ଚାକରାଣୀ କାମ କଲା। ଭିକାରି ତା ପାଇଁ ଦୁଇଟି ଡବା କିଣିଦେଇଥାଏ। ରଜାଝିଅ କାମ କରି ସାରିଲେ ଲୋକଙ୍କ ଖାଇବା ଥାଳିରେ ଯାହା ଅଇଁଠା ବଳିଥାଏ, ସେଥିରୁ ଗୋଟିଏ ଡବାରେ ତରକାରି ଓ ଆର ଡବାରେ ଭାତ ରୁଟି ପୂରାଇ ଗଣ୍ଠିଳି ବାନ୍ଧି ନେଇଆସେ। ଏପରି ଚାରି-ଛଅ ଦିନ କାମ କରିଛି କି ନାହିଁ, ନଅରରେ ଶୁଣାଗଲା – ରଜାଘର ବାହାଘର ହେବ। ବାହା ପୂର୍ବରୁ ନଅରକୁ କେତେ କୁଣିଆ ମଇତ୍ର ଆସିଲେ। କେତେ ନାଚଗୀତ ହେଲା। ଖାନାପିନାରେ ନଅର ଖାଲି ପଡ଼ିଲା ଉଠିଲା। ଦିନେ ସନ୍ଧ୍ୟାବେଳର କଥା। ନଅରରେ ବଲ୍-ନାଚ ହେବ ବୋଲି କେତେ ଆଡୁ କେତେ ପୁଅଝିଅ ଆସିଥାନ୍ତି। ଏ ରଜାଝିଅ ନାଚ ଦେଖିବ ବୋଲି ଯାଇ ନାଚଘର ଦୁଆର କୋଣରେ ମୁଣ୍ଡପୋତି ଠିଆହୋଇଥାଏ। ଚାହୁଁ ଚାହୁଁ ବାଜା ବାଜିଉଠିଲା। ଏ ନାଚର ନିୟମ ହେଲା, ପୁଅଝିଅମାନେ ଅଲଗା ଅଲଗା ହୋଇ ବସିଥାନ୍ତି, ବାଜା ବାଜିଲେ ଯାହାର ଯାହା ସହିତ ନାଚିବାକୁ ଇଚ୍ଛା ଥାଏ, ସେ ତା ହାତ ଧରି ନାଚକୁ ଟାଣିନିଏ। ଯୋଡ଼ି ଯୋଡ଼ି ହୋଇ ପୁଅଝିଅ ନାଚନ୍ତି। ନାଚ ଆରମ୍ଭ ହେଉ ହେଉ ରଜା କଣ କଲେ ନା, ଦୁଆର କୋଣରେ ଠିଆହୋଇଥିବା

ଏହି ରଜାଝିଅର ହାତ ଧରି ନାଚିବାକୁ ଡାକିଲେ। ଅବଶ୍ୟ ସେତେବେଳେ ସମସ୍ତେ ତାକୁ ଚାକରାଣୀ ବୋଲି ଜାଣନ୍ତି। ସେ ଚାକରାଣୀଟାଏ, ରଜାଙ୍କ ସହିତ ନାଚିବାକୁ ତାର ସାହସ ପାଇଲା ନାହିଁ। ସେ ଟାଣିଓଟାରି ହେଉ ହେଉ ତା ହାତରୁ ତ ଗଣ୍ଡିଲିଟା ଖସିପଡ଼ିଲା ଯେ ସେଥିରେ ଥିବା ଡବା ଦୁଇଟି ଖୋଲିଯାଇ ସବୁତକ ଅଇଁଠା ତରକାରି ଢାଳି ହୋଇ ଚଟାଣରେ ପଡ଼ିଗଲା। କି ଅପମାନ! କି ଲାଜ! ଲୋକେ ଉପହାସରେ ତାଳି ମାରିବାକୁ ଲାଗିଲେ। ଏହି ମଉକାରେ ଏ ରଜାଝିଅ ସେଠାରୁ ଦୌଡ଼ି ପଳାଇଗଲା। ସିଡ଼ିରୁ ଓହ୍ଲାଇ ପଳାଇଯାଉଛି– ଏତିକିବେଳେ ପଛରୁ ଜଣେ ଲୋକ ଆସି ତାକୁ ଧରିପକାଇଲା। ଅନ୍ଧାରୁଆ ଜାଗାଟା ହୋଇଥାଏ। ଲୋକଟା କହିଲା– "ତୁମେ ଯଥେଷ୍ଟ ଦଣ୍ଡ ପାଇଲଣି, ଆଉ ଦଣ୍ଡ ଦିଆଯିବ ନାହିଁ। ଆସ, ଚାଲିଆସ।" ଏପରି କହି ଲୋକଟି ତାକୁ ଆଣି ନାଚଘରେ ଠିଆ କରାଇ ଦେଲା। ସେଠାରେ ତ କେତେ ନାହିଁ କେତେ ବତି ଜଳୁଥାଏ। ବତି ଆଲୁଅରେ ରଜାଝିଅ ଦେଖିଲା, ତାକୁ ଧରିଆଣିଥିବା ଲୋକଟି ନିଜେ ଛେଳିଦାଢ଼ିଆ ରଜା। ରଜା ତା ହାତ ଧରି କହିଲେ, "ଡର ନାହିଁ, ମୁଁ ହିଁ ସେ କେନ୍ଦେରା ବଜାଉଥିବା ଭିକାରି। ତୁମ ରୂପ ଦେଖି ମୁଁ ମୋହିହୋଇଥିଲି। କିନ୍ତୁ ସ୍ୱୟଂବର ସଭାରେ ତୁମ ଗୁଣ ଦେଖି ମୁଁ ଠିକ୍ କରିଥିଲି ଯେ ଦିନେ ନା ଦିନେ ତୁମ ଗର୍ବ ଭାଙ୍ଗିବି। ଏବେ ଗର୍ବ ଭାଙ୍ଗିଯାଇଛି– ନୁହେଁ ?"

ରଜାଝିଅ ତାଙ୍କ ପାଦ ଧରିପକାଇ କହିଲା, "ସ୍ୱାମୀ, ମତେ କ୍ଷମା କର। ମୁଁ ଆଉ ଅନ୍ୟକୁ ଏପରି ହୀନ ଆଖିରେ ଦେଖିବି ନାହିଁ।"

ରାଜା ତାକୁ କ୍ଷମା ଦେଲେ। ସଙ୍ଗେ ସଙ୍ଗେ ତାକୁ ଲୁଗାପଟା ଆୟଅଳଙ୍କାର ଦେଇ ସମସ୍ତଙ୍କ ଆଗରେ ତାକୁ ବିବାହ କଲେ। ବନ୍ଧୁବାନ୍ଧବ ତ ଜମିଥିଲେ, ବାଜା ବାଜୁଥିଲା, ନାଚ ଚାଲିଥିଲା– ନାଚ ଶେଷରେ ଯେଉଁ ବାହାଭୋଜି ହେଲା, ...ଆମେ ସେଠିକି ଯାଇଥାନ୍ତେ କି!!

## ଏକଆଖିଆ, ଦୁଇଆଖିଆ, ତିନିଆଖିଆ

ଗୋଟିଏ ବିଧବା ବୁଢ଼ୀ ଥାଏ ଯେ, ତାର ତିନି ଝିଅ। ଏକା ମାଆର ତିନି ଝିଅ; କିନ୍ତୁ କେହି କାହାରିପରି ନୁହଁନ୍ତି। ବଡ଼ ଝିଅର ଥାଏ ଗୋଟିଏ ଆଖି; କପାଳ ମଝିରେ ସେ ଆଖିଟି ଥାଏ। ସେ ଗୋଟିକ ଆଖି ବୁଜିଦେଲେ ସେ ଆଉ କିଛି ଦେଖି ପାରେ ନାହିଁ। ତେଣୁ ମାଆ ତାକୁ ନାଆଁ ଦେଇଥାଏ ଏକଆଖିଆ। ମଝିଆଁ ଝିଅର ଥାଏ ତୁମ ଆମ ପରି ଦୁଇଟି ଆଖି; ତାକୁ ମାଆ ଡାକେ

ଦୁଇଆଖିଆ। କିନ୍ତୁ ସାନଟିରେ ଥାଏ ତିନିଟି ଆଖି; ତୁମ ଆମ ପରି ଦୁଇଟି ଆଖି ଥାଏ, ପୁଣି କପାଳ ମଝିରେ ଥାଏ ଆଉ ଗୋଟିଏ ଆଖି। ତା ନାଆଁ ତିନିଆଖିଆ। ମାଆ କିନ୍ତୁ ବଡ଼ ଓ ସାନ ଝିଅକୁ ଯେମିତି ଭଲପାଏ, ମଝିଆଁକୁ ସେମିତି ଭଲପାଏନି। କହେ, "ଆଲୋ, ଗାଆଁର ବାକି ଶହେ ଝିଅଙ୍କର ଯିମିତି ଦୁଇଦୁଇଟା ଆଖି, ତୋର ସିମିତି ଦୁଇଟା ଆଖି। ତୋ ଠେଇଁ ବଡ଼ପଣିଆ କଣ ଅଛି? ମୋର ଆଉ ଦୁଇ ଝିଅ ଯେ, ତାଙ୍କପରି କିଏ?" ତେଣୁ ସେ ମାଆ ଦୁଇଆଖିଆକୁ ବାର ହୀନ କରି କହେ। ମାଆ ଦେଖାଦେଖି ଆଉ ଦୁଇ ଭଉଣୀ ତାକୁ ଆଡ଼ଆଖିରେ ଚାହାଁନ୍ତି ନାହିଁ। ଘରଯାକର କାମ ତା'ରି ହାତରେ କରାନ୍ତି; କିନ୍ତୁ ଭଲ କରି ମୁଠେ ଖାଇବାକୁ ଦିଅନ୍ତି ନାହିଁ କି ଭଲ କରି ଖଣ୍ଡେ ପିନ୍ଧିବାକୁ ଦିଅନ୍ତି ନାହିଁ। ମୋଟା ବଗଡ଼ା ଗଣ୍ଡିଏ ଖାଇ, ଚିରାଫଟା ଖଣ୍ଡିଏ ପିନ୍ଧି ସେ କାଳକାଟେ। ଘରକାମ ସରିଲେ ମାଆ ତାକୁ ଛେଳି ଜଗିବାକୁ ପଠାଇଦିଏ। ତାଙ୍କ ଘରେ କି ସୁନ୍ଦର କାଞ୍ଚକାଞ୍ଚିଆ ହୋଇ ଛେଳିଟିଏ ଥାଏ। ସେହି ଛେଳିଟି ତାର ସାଙ୍ଗ। ସେ ଛେଳିକି ଆଉଁସା ଅଣ୍ଡଳା କରି ମନର ଦୁଃଖ କହେ। ତା'ରି ପାଖରେ ବସି କାନ୍ଦେ। ଛେଳି ତାକୁ ଚାଟି ଚାଟି ମେଁ ମେଁ କରି ବୋବାଏ।

ଦିନକର କଥା। ବାକି ଛେଳିଗୁଡ଼ାକ ଚରୁଛନ୍ତି। ଦୁଇଆଖିଆ କାଞ୍ଚିଆ ଛେଳିକି ଧରି କାନ୍ଦୁଛି, ଏତିକିବେଳେ ଜଣେ ବୁଢ଼ୀ ଆସି ସେଠାରେ ପହଞ୍ଚିଗଲେ। ସେ ଦୁଇଆଖିଆକୁ ପଚାରିଲେ, "କି ଲୋ ମାଆ, କାହିଁକି ଏପରି କାନ୍ଦୁଛୁ?"

ଦୁଇଆଖିଆ କହିଲା, "ମାଉସୀ, ମୋର କି ଦୋଷ ହୋଇଛି କହିଲ? ମୋର ଅନ୍ୟମାନଙ୍କ ପରି ଦୁଇଟି ଆଖି ଅଛି ବୋଲି, ମୋ ମାଆ ଯିମିତି, ମୋ ଭଉଣୀ ଦିହେଁ ସିମିତି, ମତେ ଦେଖିଲେ ନାକ ଟେକୁଛନ୍ତି। ମୁଁ ଘରଟିଯାକର କାମ କରିବି। ମତେ ଖାଇବାକୁ ଦେବେ ବାସି ଅଇଁଠା ଦି'ମୁଠା। ମୋ ଉପରକୁ ଚିରା ମସିଆ କୋତରା ଫିଙ୍ଗିଦେଇ କହିବେ– ଏକୁ ପିନ୍ଧେ, ନ ହେଲେ ନାହିଁ। ଦୁନିଆରେ ନ ଥିବା ଗାଳି ମୋ ଉପରେ ବରଷି ଦେଉଛନ୍ତି। ଆଜି ତହିଁକି ମୁଠିଏ ବୋଲି ମତେ ଖାଇବାକୁ ଦେଇଛନ୍ତି ଯେ, ମୋ ପେଟ ଖାଲି ଜଳୁଛି। କାନ୍ଦିବିନି ତ ଆଉ କଣ କରିବି, କହିଲ?"

ସେ ବୁଢ଼ୀ ମାଉସୀ କି ମନ୍ତ୍ର ଜାଣିଥିଲେ କେଜାଣି, ଦୁଇଆଖିଆର ଦୁଃଖକଥା ଶୁଣି ତା ମୁଣ୍ଡ ସାଉଁଳେଇଦେଇ କହିଲେ, "ହଉ ଲୋ ମାଆ, ଆଉ କାନ୍ଦନି! ମୁଁ ତତେ ଗୋଟିଏ କଥା ଶିଖାଇ ଦେଉଛି। ସେତକ କଲେ ତୋର ଆଉ ଭୋକଶୋଷକୁ ଡର ନଥିବ। ଯେତେବେଳେ ଭୋକ କରିବ, ତୋର ଏ ଯେଉଁ କାଞ୍ଚିଆ ଛେଳିଟି ଅଛି, ଏକୁ କହିବୁ– 'ମେଁ ମେଁ କା ଛେଳି, / ଭୋକ ହେଲାଣି, ଶୋଷ ହେଲାଣି,

ଆଣ ଭୋଜନ ଥାଳି।'

ଦେଖିବୁ– ତୋ ଆଗରେ ଟେବୁଲ ପଡ଼ି ତା ଉପରେ କେତେ କଣ ଖାଇବା ଚିଜ ପରଷା ହୋଇଯିବ। ତୁ ଖାଇପିଇ ଆରାମ ହୋଇଯିବା ପରେ ଛେଳିକୁ କହିବୁ–

'ମେଁ ମେଁ କା ଛେଳି, / ଖାଇ ସାରିଲି ପିଇ ସାରିଲି
ନେ ଭୋଜନ ଥାଳି।'

ଦେଖିବୁ– ସେ ଟେବୁଲ, ସେ ଥାଳି, ଗିଲାସ ସବୁ ଆପେ ଆପେ ଉଠି ପଳାଇବ। କିନ୍ତୁ ଏ କଥା ଆଉ କାହାକୁ କହିବୁ ନାହିଁ।'' ଏତିକି କହିଦେଇ ସେ ବୁଢ଼ୀ ମାଉସୀ କୁଆଡ଼େ ଉଭାନ ହୋଇଗଲେ। ଦୁଇଆଖିଆ ଭାବିଲା, 'ମାଉସୀ ତ କହିଦେଇ ଗଲେ– କଥାଟା ସତ କି ମିଛ ଥରେ କସି ଦେଖେ! ଭୋକ ହେଉଛି, ମିଳିଗଲେ ଖାଇପକାଇବି।' ଏପରି ଭାବି ସେ ଛେଳିକୁ କହିଲା–

''ମେଁ ମେଁ କା ଛେଳି, / ଭୋକ ହେଲାଣି, ଶୋଷ ହେଲାଣି,
ଆଣ ଭୋଜନ ଥାଳି।''

ତା ପାଟିରୁ ଏତକ ବାହାରିଛି କି ନାହିଁ, ସାଙ୍ଗେ ସାଙ୍ଗେ ତା ଆଗରେ ଆସି ଟେବୁଲ ଚଉକି ପଡ଼ିଗଲା। ଚାହୁଁ ଚାହୁଁ ଟିଂ ଟାଂ ହୋଇ ଥାଳି, ଥାଳିଆ, ଗିନା, ଗିଲାସ ଆସି ଥୁଆହୋଇଗଲା, ଆଉ ସେଥିରେ ପରଷା ହୋଇଗଲା କେତେ ନାହିଁ କେତେ କିସମର ଖାଇବା ଜିନିଷ। ଦୁଇଆଖିଆ କି ଆଉ ଡେରି କରନ୍ତା! ସେ ତାର ଖାଇପିଇ ଆରାମ ହୋଇଗଲା। ଶେଷରେ ମୁହଁ ହାତ ପୋଛି କହିଲା– ''ମେଁ ମେଁ କା ଛେଳି, / ଖାଇ ସାରିଲି ପିଇ ସାରିଲି
ନେ ଭୋଜନ ଥାଳି।''

ସାଙ୍ଗେ ସାଙ୍ଗେ ଚଉକି, ଟେବୁଲ, ଗିନା, ଥାଳି ସବୁ କୁଆଡ଼େ ଉଭାନ। ସେଇଦିନଠାରୁ ତାର ଆଉ ଚିନ୍ତା ରହିଲା ନାହିଁ। ମାଆ ଯେଉଁ ବାସି ଅଇଁଠାଗଣ୍ଡିକ ଦିଏ, ସେତକ ଫୋପାଡ଼ି ଦେଇ ଏହି ଖାନା ଖାଇ ରହିଲା। ଖିଆପିଆର ଅଭାବ ନ ରହିବାରୁ ସେ କି ସୁନ୍ଦର ଉଉଲଡାଉଲ ହୋଇ ବଢ଼ିବାକୁ ଲାଗିଲା! କାମ କଲା ସତ, ହେଲେ ଏଥର ହସିଖେଳି କାମ କଲା। ଏଣେ ମାଆ ଓ ଦି'ଭଉଣୀ ଦେଖିଲେ, ଦୁଇଆଖିଆକୁ ଯାହା ବାସି ଅଇଁଠା କରି ଗଣ୍ଡିଏ ଦେଉଛନ୍ତି, ସେତକ ସେ ଖାଉ ନାହିଁ; କେଉଁ ନାହିଁ କେଉଁ ଆଡ଼ରେ ଫିଙ୍ଗି ଫୋପାଡ଼ି ଦେଉଛି। ପଚାରିଲେ କହୁଛି ଭୋକ ନାହିଁ, ପେଟ କାଟୁଛି, ଇମିତି ସିମିତି। ମଣିଷଟା ନ ଖାଇ ନ ପିଇ କିପରି ଏଭଳି ହସି ଖେଳି କାମ କରୁଛି ବୋଲି ତିନିଙ୍କି ତିନିହେଁ କାବା ହୋଇଗଲେ। ଶେଷକୁ ଦିନେ ଏକଆଖିଆ କହିଲା, ''ଆଲୋ, ତମେ ଜାଣିନା? ସେ ନିଶ୍ଚୟ ଲୁଚେଇ ଚୋରେଇ ଖାଉଛି। ମୁଁ କାଲି ତା ସାଙ୍ଗରେ ଛେଳି ଚରାଇବାକୁ ଯିବି। ତାକୁ ଗୋଡ଼େ ଗୋଡ଼େ ଜଗିଥିବି। ସେ କେଉଁଠି କିପରି ଖାଉଛି, ଦେଖିବି।''

ତା'ପରଦିନ ସକାଳୁ ସକାଳୁ ମାଆ ଦୁଇଆଖିଆକୁ କହିଲା, ''ହଇ ଲୋ, ତୁ କି ଛେଳି ଜଗୁଛୁ କେଜାଣି; ମୋ ଛେଳିଗୁଡ଼ାକ ଚରାବୁଲା ପାଉ ନାହାନ୍ତି ଯେ, ଶୁଖିଗଲେଣି। ଆଜି ତୋ ସାଙ୍ଗରେ ଏକଆଖିଆ ଯିବ, ସେ ତତେ ଛେଳିଚରା ଶିଖେଇଦବ।''

ଦୁଇଆଖିଆ ତ ଭିତରେ ଏତେ କୂଟ କପଟ ଅଛି ବୋଲି ଜାଣେନି; ସେ କହିଲା, ''ହଉ ଆସୁ।'' ଦୁଇ ଭଉଣୀ ଛେଳି ଚରାଇବାକୁ ଚାଲିଗଲେ। ବଣ ବିଲ ବୁଲି ଛେଳି ଚରାଉ ଚରାଉ ଏକଆଖିଆ କହିଲା, ''ଆଲୋ, ଖରାଟାରେ ଏତେ ବୁଲିବା କାହିଁକି? ଆସ, ଏ ଗଛ ଛାଇରେ ବସିବା। ଛେଳି ତାଙ୍କର ଲଟା ବୁଦା ବୁଲି ଚରନ୍ତୁ।'' ଏପରି କହି ଗୋଟିଏ ଗଛମୂଳରେ ବସିପଡ଼ି ଢୁଳେଇଲା। ଦୁଇଆଖିଆକୁ ସେତେବେଳକୁ ଭୋକ ହେଲାଣି। ସେ ଏକଆଖିଆର ମୁଣ୍ଡ ସାଉଁଳେଇ ଦେଉ ଦେଉ ଗୋଟିଏ ଗୀତ ଗାଇଚାଲିଲା —

''ଏକଆଖିଆ ଲୋ, ଏକଆଖିଆ, / ହୋଇଗଲୁଣି ତୁ ବଡ଼ ହାଲିଆ
ଏକ ଆଖି ବୁଜି ତୁ ଶୋଇପଡ଼ / ଉଠାଇ ଦେବି ମୁଁ ଗଡ଼ିଲେ ବେଳ।''

ଇମିତି ଗାଇ ଗାଇ ସେ ଏକଆଖିଆକୁ ଶୁଆଇଦେଲା। ତା ପରେ କାଞ୍ଛିଆ ଛେଳିକୁ ଡାକି କହିଲା —

''ମେଁ ମେଁ କା ଛେଳି, / ଭୋକ ହେଲାଣି, ଶୋଷ ହେଲାଣି,
ଆଣ ଭୋଜନ ଥାଳି।''

ଭୋଜନ ଥାଳି ଆସିଗଲାରୁ ଖାଇପିଇ ଆରାମ ହୋଇ ସେ 'ଭୋଜନ ଥାଳି ନେଇଯା' ବୋଲି କହିଦେଲା। ସବୁ ସଫାସୁତୁରା ହୋଇଯିବା ପରେ ଏକଆଖିଆକୁ ଡାକି କହିଲା, ''ହେ ନାନି! ତୁ ଯଦି ଇମିତି ଛେଳି ଚରେଇବୁ ନା, ଛେଳି ଖାଇପିଇ ବେଶୀ ମୋଟା ହୋଇଯିବେ!'' ସନ୍ଧ୍ୟା ହେବାରୁ ଦୁଇ ଭଉଣୀ ହସିଖେଳି ଛେଳି ନେଇ ଘରକୁ ପଳାଇ ଆସିଲେ। ରାତିରେ ଏକଆଖିଆ ମାଆକୁ କହିଲା, ''ମାଆ ଲୋ, ମୁଁ ତ ସକାଳୁ ସଞ୍ଜଯାଏ ତାକୁ ଜଗି ବସିଲି; କିଛି ଦେଖିଲି ନାହିଁ। ସତରେ ଦୁଇଆଖିଆ କେଉଁଠୁ କିଛି ଖାଉ ନାହିଁ।'' ଏ କଥା ଶୁଣି ତିନିଆଖିଆ କହିଲା, ''ତୁ ପାରିଲୁ ନାହିଁ। ସେ କେଉଁ ନାହିଁ କେଉଁ ଛଟକରେ ଖାଉଥିବ। ମୁଁ କାଲି ଯିବି ଯେ, ତାର ସବୁ ଗୁମର ଖୋଲିଦେବି।''

ତା'ପରଦିନ ଛେଳି ଚରାଇବାକୁ ଦୁଇଆଖିଆ ସାଙ୍ଗରେ ତିନିଆଖିଆ ଗଲା। ଛେଳି ଚରାଉ ଚରାଉ ଖରାବେଳ ହେବାରୁ ତିନିଆଖିଆକୁ ବି ହାଲିଆ ଲାଗିଲା। ସେ ଗୋଟିଏ ଗଛମୂଳେ ବସି ଢୁଳୋଉ ଢୁଳୋଉ ତାକୁ ଶୋଇଦେବା ଲାଗି ଦୁଇଆଖିଆ ଗୀତ ଆରମ୍ଭ କରିଦେଲା —

''ତିନିଆଖିଆ ଲୋ, ତିନିଆଖିଆ, / ହୋଇଗଲୁଣି ତୁ ବଡ଼ ହାଲିଆ

ତିନି ଆଖି ବୁଜି ତୁ ଶୋଇପଡ଼ / ଉଠାଇ ଦେବି ମୁଁ ଗଡ଼ିଲେ ବେଳ।''

ଏପରି ଗୀତ ଗାଇ ଗାଇ ଭଉଣୀକୁ ଶୁଆଉ ଶୁଆଉ ତାର କେତେବେଳେ ''ତିନି ଆଖି ବୁଜି ତୁ ଶୋଇପଡ଼'' ବଦଳରେ ''ଦୁଇ ଆଖି ବୁଜି ତୁ ଶୋଇପଡ଼'' ହୋଇଯାଉଥାଏ; କାରଣ ସମସ୍ତଙ୍କର ଦୁଇଟା ଆଖି। ଦି'ଆଖି ବୁଜିଲେ ମଣିଷ ଶୋଇଲା। ତେଣୁ ଦୁଇଆଖିଆର ସେହି ଭୁଲ ହୋଇଯାଉଥାଏ। ସତକୁ ସତ ତିନିଆଖିଆର ଦୁଇଆଖି ବୁଜିହୋଇଗଲା। ତୃତୀୟ ଆଖିଟି ଟିକିଏ ପଡ଼ିଯାଉଥାଏ, ଟିକିଏ ଖୋଲିଯାଉଥାଏ। ଦୁଇଆଖିଆ ସେତକ ଜାଣି ପାରିଲା ନାହିଁ। ତିନିଆଖିଆ ଶୋଇପଡ଼ିଲା ଭାବି ସେ ଯାଇ ତା କାଛୁଆ ଛେଳିକୁ ଅଣ୍ଡାଳି ଆଉଁସି କହିଲା –

''ମେଁ ମେଁ କା ଛେଳି,
ଭୋକ ହେଲାଣି, ଶୋଷ ହେଲାଣି,
ଆଣ ଭୋଜନ ଥାଳି।''

ଭୋଜନ ଥାଳି ସବୁଦିନପରି ଆସିଗଲା। ସବୁଦିନପରି ଖାଇପିଇ ଦୁଇଆଖିଆ ଭୋଜନ ଥାଳି ଉଠାଇନେବାକୁ କହିଦେଲା। ସବୁ ସଫାସୁତୁରା ହୋଇଯିବା ପରେ ସେ ତିନିଆଖିଆକୁ ଡାକି କହିଲା, ''ଆଲୋ ହେ, ଦେଖୁଛି ତୁ ବଢ଼ିଆ ଛେଳି ଜଗିବୁ। ଦେ ଉଠ, ଉଠ, ଆଉ ଶୁଅନା।'' କିନ୍ତୁ ତିନିଆଖିଆର ଦୁଇଟି ଆଖି ସିନା ଶୋଇଥିଲା, ତୃତୀୟ ଆଖିଟି ତ ଶୋଇ ନ ଥାଏ। ତେଣୁ ସେ ଯାହା ସବୁ ଘଟିଗଲା, ତାହା ଦେଖିଥାଏ। ଦୁଇଆଖିଆର ସବୁ ଗୁମର ଜାଣି ସେ ମନେ ମନେ ଗଲ୍‌ଚାଉଳ ଚୋବାଉଥାଏ। ଦୁଇଆଖିଆର ଡାକ ଶୁଣି ସେ ଆଖି ମଳି ମଳି ଉଠିପଡ଼ିଲା। ସେଦିନ ସନ୍ଧ୍ୟାରେ ଘରକୁ ଫେରିବା ପରେ ତିନିଆଖିଆ ମାଆ ଓ ଏକଆଖିଆକୁ ନିଜେ ଦେଖିଥିବା ସବୁ ଘଟଣା କହିଗଲା। ସବୁ ଶୁଣି ମାଆ କହିଲା, ''ତାର ଏଡ଼ିକି ଦିମାକ! ମୁଁ ଛଡ଼େଇ ଦେଉଛି ରହ। କାଲି କଂସେଇକୁ ଡାକି ମୁଁ ସେ ଛେଳିକି ହଣାଇଦେବି।''

ତା' ପର ଦିନ ସକାଳେ ସତକୁ ସତ କଂସେଇକୁ ଡକାଇ ତା ହାତରେ କାଛୁଆ ଛେଳିଟିକୁ ହଣାଇଦେଲେ। ମାଂସ ହେଲା। ସାହିପଡ଼ିଶାକୁ ବାଣ୍ଟିଲେ, କିନ୍ତୁ ଦୁଇଆଖିଆକୁ ପୁଟେ ବି ଦେଲେ ନାହିଁ। ଦୁଇଆଖିଆ ଛେଳିକୁ ଚରିବାକୁ ଛାଡ଼ିଦେଇ ହିଡ଼ ଉପରେ ବସି କାନ୍ଦିଲା। କାନ୍ଦି କାନ୍ଦି ଧକୋଉଛି, ଏତିକିବେଳେ ସେହି ଯେଉଁ ବୁଢ଼ୀ ମାଉସୀ, ସେ ଆସି ପହଞ୍ଚିଗଲେ। ଦୁଇଆଖିଆକୁ ବୋଧାବୋଧି କରି ପଚାରିଲେ, ''କି ଲୋ, କାହିଁକି ଏପରି କାନ୍ଦୁଛୁ ?''

ଦୁଇଆଖିଆ ନିଜର ସବୁ ଦୁଃଖ ଜଣାଇ କହିଲା, ''ମୋ ଛେଳି ତ ମଲା, ଏ ପୋଡ଼ା ପ୍ରାଣ ଥାଇ ଲାଭ କଣ ? ଭୋକ-ଉପାସରେ କେତେ ଆଉ ଦହଗଞ୍ଜ ହେବି ?''

ବୁଢ଼ୀ କହିଲେ, "ଆଲୋ, ଦୁଃଖ ସହିଥିଲେ ସୁଖ ମିଳେ। ତୁ ଗୋଟିଏ କାମ କର। ଘରକୁ ଯାଇ ମାଆ ଭଉଣୀଙ୍କୁ କହ, "ଛେଳି ମାରି ସବୁ ମାଂସ ତ ଖାଇଲ, ମତେ ହେଲେ ପୁଟାଟି ଦିଅ; ମୁଁ ସେଇଟି ଖାଇବି। ଯଦି ସେମାନେ ସେଇଟି ଦିଅନ୍ତି, ତେବେ ସେଇଟିକୁ ନଖାଇ ରାତିରେ ତୁମ ଘର ଆଗରେ ପୋତିଦେବୁ। ଦେଖିବୁ, ସକାଳ ହେଲାବେଳକୁ ବହୁତ ବଦଳି ଯାଇଥିବ।" ଏତିକି କହି ବୁଢ଼ୀ ଉଭାନ ହୋଇଗଲେ। ସେଦିନ ସନ୍ଧ୍ୟାରେ ଘରକୁ ଫେରି ଦୁଇଆଖିଆ ମାଆ ଓ ଭଉଣୀଙ୍କୁ କହିଲା, "ମୁଁ କାଈଁଆ ଛେଳିଟିକୁ ଏଡ଼େ ଆଦରରେ ପାଳିଥିଲି; ମତେ ଅନ୍ତପୁଟାଟି ହେଲେ ଦିଅ।"

ଭଉଣୀମାନେ ଛିଗୁଲେଇ ହୋଇ କହିଲେ, "ତତେ ସେଇଆ ଯୋଗାଏ –ନେ।" ଦୁଇଆଖିଆ ସେ ଅନ୍ତପୁଟାଟି ଆଣି ଲୁଚାଇ ରଖିଦେଲା। ସମସ୍ତେ ଶୋଇବା ପରେ ଚୁପ୍‌କିନା ଯାଇ ଘର ଆଗରେ ଗାତଟିଏ କରି ସେ ଅନ୍ତପୁଟାତକ ପୋତିଦେଲା। ସକାଳୁ ଉଠି ସମସ୍ତେ ଦେଖନ୍ତି ତ ଦୁଆରମୁହଁରେ ଗୋଟିଏ ଅପୂର୍ବ ଗଛ ଉଠିଛି। ତାର ଡାଳପତ୍ର ସବୁ ରୁପାର, ଫଳଗୁଡ଼ାକ ସୁନାର। ଚକମକ କରି ଝଲସିଉଠୁଛି ଯେ, ଯେ ଦେଖିଲେ ସେ ଆଚ୍ଚମ୍ବିତ ହୋଇ ଠିଆହୋଇ ଯାଉଛି। ସମସ୍ତେ କହୁଛନ୍ତି, ଏଭଳି ସୁନ୍ଦର ଗଛ କେବେ ଦେଖା ନଥିଲା କି ଶୁଣା ନଥିଲା। କିନ୍ତୁ ରାତାରାତି ଏପରି ଏକ ଗଛ କିପରି ଯେ ଦୁଆରମୁହଁରେ ଉଠିଗଲା, ଏକଆଖିଆ କି ତିନିଆଖିଆ କିମ୍ବା ସେମାନଙ୍କର ମାଆ କେହି ଜାଣି ପାରିଲେ ନାହିଁ। କିନ୍ତୁ ଦୁଇଆଖିଆ ଜାଣିଗଲା ଯେ, ଏ ଗଛ ନିଶ୍ଚୟ ତା କାଈଁଆ ଛେଳିର ଅନ୍ତପୁଟାରୁ ଉଠିଛି। କାରଣ ସେ ଯେଉଁଠି ଅନ୍ତପୁଟା ପୋତିଥିଲା, ଗଛଟି ଠିକ୍ ସେଇଠି ଉଠିଛି; ଏଇଥିପାଇଁ ବୋଧ ହୁଏ ସେହି ବୁଢ଼ୀ ମାଉସୀ କହିଥିଲେ ଯେ ସେତକ ପୋତିଦେଲେ ସକାଳକୁ ବହୁତ ବଦଳି ଯାଇଥିବ। ଦାଣ୍ଡଲୋକେ ଦେଖି ଚାହିଁ ଯେ ଯାହା କାମରେ ଚାଲିଯିବା ପରେ ମାଆ ଏକଆଖିଆକୁ କହିଲା, "ଆଲୋ ଝିଅ, ଚାହିଁଛୁ କଣ? ଗଛରେ ଚଢ଼ି ଦୁଇଟା ଫଳ ତୋଳ; ଏଡ଼େ ସୁନ୍ଦର ଦେଖାଯାଉଛି, କିମିତି ସୁଆଦ ଲାଗୁଛି ଦେଖିବା!"

ମାଆ କଥା ମାନି ଏକଆଖିଆ ଝିଅ ଗଛରେ ଚଢ଼ିଗଲା। କିନ୍ତୁ ତା ହାତପାଆନ୍ତାରେ ଥିବା ଗୋଟିଏ ଫଳ ତୋଳିବ ବୋଲି ହାତ ବଢ଼ାଇ ଦିଏ ତ, ସେ ଫଳ ଆଉ ହାତରେ ପଡ଼ିଲା ନାହିଁ। ଡାଳଟି ଆପଣାଛାଏଁ ଉପରକୁ ଉଠିଗଲା। ତେଣୁ ସେ ଆଉ ଗୋଟିଏ ଫଳକୁ ହାତ ବଢ଼ାଇଲା। କିନ୍ତୁ ସେ ଫଳ ବି ହାତରେ ନପଡ଼ି ଦୂରକୁ ଘୁଞ୍ଚିଗଲା। ଏପରି ସେ ଯେତେ ଯେଉଁଠିକି ହାତ ବଢ଼ାଇଲା, କୌଣସି ଫଳ ହାତରେ ପଡ଼ିଲା ନାହିଁ। ଶେଷକୁ ମାଆ କହିଲା, "ଆଲୋ, ତୁ ପାରିବୁ ନାହିଁ; ତିନିଆଖିଆ ଚଢ଼ୁ ଯେ, ସେ ତୋଳି ଦେବ।"

ଏଥର ତିନିଆଖିଆ ଝିଅ ଗଛରେ ଚଢ଼ିଲା। କିନ୍ତୁ ସେ ଯେଉଁ ଡାଳକୁ ହାତ ବଢ଼ାଇଲା, ସେ ଡାଳ ବି ଦୂରକୁ ଘୁଞ୍ଚିଗଲା। ହାତ ବଢ଼ାଇ ବଢ଼ାଇ ସେ ନୟାନ୍ତ ହୋଇଗଲା, ଗୋଟିଏ ହେଲେ ଫଳ ତୋଳି ପାରିଲା ନାହିଁ। ସେ ଫଳ ତୋଳି ନପାରି ଓହ୍ଲାଇ ଆସିବା ପରେ ଦୁଇଆଖିଆ ଝିଅ ମାଆକୁ କହିଲା, "ମାଆ, ମୁଁ ଥରେ ଚେଷ୍ଟା କରିବି କି?"

ମାଆ ଝିଅ ତିନିଜଣଯାକ ତାକୁ ଖତେଇ ଛିଗୁଲେଇ ହୋଇ କହିଲେ, "ବଡ଼ ବଡ଼ ଗଲେ ଫସର ଫାଟି, ସାନ ଆଇଲେ ବେସର ବାଂଟି! ହଇ ଲୋ, ତାର ତିନି ତିନିଟା ଆଖି ଥାଇ ସେ ପାରିଲା ନାହିଁ, ତୁ କେଉଁ ସାହସରେ ପାରିବୁ ବୋଲି କହୁଛୁ?" ଏତେ ପ୍ରକାର କହିବା ପରେ ବି ଦୁଇଆଖିଆ ଗଛରେ ଚଢ଼ି ଫଳ ତୋଳିବ ବୋଲି ଅଳି କରିବାରୁ, ମାଆ କହିଲା, "ଦେ, ଚଢ଼୍।"

ଦୁଇଆଖିଆ ଗଛରେ ଚଢ଼ି ଗୋଟିଏ ଫଳକୁ ହାତ ବଢ଼ାଇଦିଏ ତ ସେ ଫଳଟି ତା ପାଖକୁ ଲାଗିଆସିଲା। ସେ ଫଳଟି ତୋଳି ଦେଉ ଦେଉ ମାଆ ତଳେ ଥାଇ ଡାକ ପକାଇଲା, "ଆଲୋ, ଫଳଟାକୁ ତଳକୁ ପକା, ଚାଖିବା।" ଦୁଇଆଖିଆ ଫଳଟିକୁ ତଳକୁ ପକାଉ ପକାଉ ମାଆ ଝିଅ ତିନିହେଁ ମିଶି ସେଇଟି ଖାଇଦେଲେ। ଫଳ ଦେଖିବାକୁ ଯେମିତି ସୁନ୍ଦର, ଖାଇବାକୁ ସିମିତି ସୁଆଦ। ଦୁଇଆଖିଆ ଯେତକ ଫଳ ତୋଳିଲା, ସେ ତିନିଜଣ ସେ ସବୁତକ ଖାଇଦେଲେ। ଫଳ ତୋଳିସାରି ଦୁଇଆଖିଆ ତଳକୁ ଆସିବାବେଳକୁ ତା ପାଇଁ ଟିକିଏ କି ନିଖିଏ ଫଳ ରଖି ନ ଥାନ୍ତି। ଯାହାହେଉ ଦୁଇଆଖିଆ ମନେ ମନେ ଖୁସି ହୋଇଗଲା ଯେ, ଅପୂର୍ବ ଗଛଟି କେବଳ ତା'ରି ପାଇଁ ହୋଇଛି।

ସେହିଦିନ ଉପରବେଳା କଥା। ସେ ଦେଶର ରଜାପୁଅ ସେହି ଗାଆଁ ବାଟ ଦେଇ କେଉଁଆଡ଼େ ଯାଉଥିଲେ। ଗାଆଁର ଖବର-ଅନ୍ତର ପଚାରି ବୁଝୁ ବୁଝୁ ଲୋକେ ଏହି ଅପୂର୍ବ ଗଛ କଥା ତାଙ୍କୁ କହିଲେ। ରଜାପୁଅ ଗଛ ଦେଖିବାଲାଗି ସଙ୍ଗେ ସଙ୍ଗେ ସେଠାକୁ ପଳାଇ ଆସିଲେ। ରୁପାପରି ପତ୍ର ଓ ସୁନାପରି ଫଳ ଦେଖି ସେ ବି ଆଚମ୍ବିତ ହେଲେ। ଶେଷକୁ ପଚାରିଲେ, "ଏ ଗଛ କାହାର?"

ଏ କଥା ଶୁଣି ବଡ଼େଇ ଦେଖେଇ ହୋଇ ଏକଆଖିଆ କହିଲା, "ମଣିମା, ଏ ଗଛ ମୋର।"

ରଜାପୁଅ କହିଲେ, "ବାଃ, ବଢ଼ିଆ ଗଛଟିଏ ଉତାରିଛ! କାହିଁ କାହିଁ, ଏଥିରୁ ଗୋଟିଏ ଫଳ ଲାଗିଥିବା ଡାଳ ଭାଙ୍ଗି ମତେ ଦେଲ! ମୁଁ ନେଇ ମୋ ଦଦେଇ ମହାରାଜାଙ୍କୁ ଦେଖାଇବି।"

ଏକଆଖିଆ ଫଳଥିବା ଡାଳ ଭାଙ୍ଗିବ ବୋଲି ଗଛରେ ଚଢ଼ିଗଲା। କିନ୍ତୁ ସେ ଯେଉଁ ଡାଳକୁ ହାତ ବଢ଼ାଇଲା, ସେ ଡାଳ ଦୂରକୁ ଘୁଞ୍ଚିଗଲା। ସେ

କୌଣସି ଡାଳକୁ ଛୁଇଁପାରିଲା ନାହିଁ। ଲାଜ-ଅପମାନରେ ମୁଣ୍ଡ ପୋତି ସେ ତଳକୁ ଓହ୍ଲାଇପଡ଼ିଲା। ଏଥର ତିନିଆଖିଆ କହିଲା, ‘‘ଏ ଗଛ ମୋର। ରହନ୍ତୁ, ମୁଁ ଡାଳ ଭାଙ୍ଗି ଆଣିଦେଉଛି।’’ ଏପରି କହି ସେ ଗଛରେ ଚଢ଼ିଗଲା ସତ, କିନ୍ତୁ ଡାଳ ଭାଙ୍ଗିବାକୁ ଯାଇ ସେ ବି ହାରମାନିଲା। ରଜାପୁଅ କହିଲେ, ‘‘ଏଥିରୁ ଜଣାପଡୁଛି ଏ ଗଛ ତୁମର ନୁହେଁ। ତୁମ ଘରେ ଆଉ କିଏ ସବୁ ଅଛନ୍ତି କାହିଁ; ଆସି ଡାଳଟିଏ ଭାଙ୍ଗିଲ !’’

ଏ କଥା ଶୁଣି ଦୁଇଆଖିଆ ଗଛ ଚଢ଼ିବାକୁ ଆସିଲା। ତାର ଚିରାମସିଆ ଲୁଗାପଟା, ନୁଖୁରା ବାଳ ଓ ଶୁଖିଲା ମୁହଁକୁ ଖତେଇ ହୋଇ ଅନ୍ୟ ଦୁଇ ଭଉଣୀ ବାଗକଥା କହିଲେ— ‘‘ଛିଃ ଛିଃ, ଲାଜ ଅପମାନର କଥା, ଘର ନାଆଁ ପକେଇବୁ ଲୋ ଅପରଛନି! ତୁ ଯୁବରାଜ ମଣିମାଙ୍କ ଛାମୁକୁ ଯାଆନା, ଯାଆନା !’’ ବୋଲି କହି ତାକୁ ପଛରୁ ଟାଣିଲେ। କିନ୍ତୁ ତାର ସେ ନୁଖୁରା ବାଳ ଓ ଚିରାମସିଆ ଲୁଗାପଟା ଭିତରେ ବି ଭଲ ସ୍ୱଭାବ ଯେ ଥିଲା, ସେ କଥା ରଜାପୁଅ ଦେଖିପାରିଲେ। ତାର ସରଳ ରୂପ ଦେଖି ସେ କହିଲେ, ‘‘ତାକୁ ଅଟକାଅନି, ଅଟକାଅନି— ସେ ଆସି ଚେଷ୍ଟା କରୁ।’’

ଦୁଇଆଖିଆ ଆସି ଗଛରେ ଚଢୁ ଚଢୁ ଫଳଭରା ଡାଳଗୁଡ଼ାକ ଆସି ତା ହାତରେ ବାଜିଲେ। ସେଥିରୁ ଗୋଟିଏ ଡାଳ ଭାଙ୍ଗି ଆଣି ସେ ରଜାପୁଅଙ୍କ ହାତକୁ ବଢ଼ାଇଦେଲା। ରଜାପୁଅ କହିଲେ, ‘‘ତା’ ହେଲେ, ତୁମେହିଁ ଏ ଗଛର ମାଲିକ। ଏଡ଼େ ସୁନ୍ଦର ଗଛ ବଢ଼ାଇଛ; ଏପରି ଚିରାଫଟା ପିନ୍ଧି ଦୁଃଖରେ ଅଛ କାହିଁକି ?’’

ଦୁଇଆଖିଆ ଏତିକି ଟିକକ ଆଦର ପାଇ ଆଖିରୁ ଲୁହ ଝରାଇଦେଲା। କହିଲା, ‘‘ମଣିମା, ମୋର ଦୋଷ ହେଲା, ଆଉ ସମସ୍ତଙ୍କ ପରି ମୋର ବି ଦୁଇଟି ଆଖି ଅଛି। କିନ୍ତୁ ମୋ ବଡ଼ ଭଉଣୀର ଅଛି ଗୋଟିଏ ଆଖି, ସାନ ଭଉଣୀର ଅଛି ତିନିଟି ଆଖି। ତେଣୁ ଆମ ଘରେ ମୁଁ ଚାକରାଣୀ; ସେମାନେ ରାଣୀ।’’

ଏତକ କଥାରୁ ରଜାପୁଅ ସବୁ ବୁଝିଗଲେ। ସେ ସଙ୍ଗେ ସଙ୍ଗେ ଦୁଇଆଖିଆକୁ ଘୋଡ଼ା ଉପରକୁ ଉଠାଇନେଇ ପାଖରେ ବସାଇଦେଲେ। କହିଲେ, ‘‘ଆସ, ଆଜିଠାରୁ ତୁମେ ଆମ ନଅରରେ ରହି ମୋର ରାଣୀ ହେବ। ସେମାନେ ତାଙ୍କର ଏଇଠି ରାଣୀ ହୋଇ ରହନ୍ତୁ।’’

ସମସ୍ତେ ଆବାକାବା ହୋଇ ଚାହିଁଛନ୍ତି, ରଜାପୁଅ ଦୁଇଆଖିଆକୁ ଘୋଡ଼ାରେ ବସାଇ ନେଇ ଚାଲିଗଲେ। ତା’ ପରଦିନ ସକାଳେ ଦେଖାଗଲା, ସେ ଅପୂର୍ବ ଗଛଟା ସେଠାରୁ କୁଆଡ଼େ ଉଭେଇ ଯାଇଛି। ଏକଆଖିଆ ଓ ତିନିଆଖିଆଙ୍କ

ଘରେ ଧନଦରବ ଯାହା ଥିଲା, ସେତକ ବି ଚାହୁଁ ଚାହୁଁ ସରିଗଲା। ଶେଷକୁ ସେମାନେ ଭିକ ମାଗି ଚଳିବେ ବୋଲି ଦାଣ୍ଡକୁ ବାହାରି ପଡ଼ିଲେ। କିନ୍ତୁ ସେମାନେ ଯେଉଁଠିକି ଗଲେ, ସେଇଠୁ ତଡ଼ା ଖାଇଲେ। ଲୋକେ କହିଲେ, "ଏଗୁଡ଼ାଙ୍କର ମଣିଷ ପରି ଆଖି ନାହିଁ। ଏମାନେ ଡାଆଣୀ କି ଚିରୁଗୁଣୀ ହେବେ... ମାର ମାର, ତଡ଼ିଦିଅ।"

## ଜନ୍ ବିଶ୍ୱାସରାୟ

ଜଣେ ପ୍ରତାପୀ ରାଜା ଥାଆନ୍ତି। ସେ ହଠାତ୍ ରୋଗରେ ପଡ଼ିଲେ। ଯେତେ ଯାହା ଚିକିତ୍ସା କଲେ ବି ରୋଗ ଭଲ ହେଲା ନାହିଁ। ରାଜା ଭାବିଲେ, ଶେଷ ସମୟ ଆସିଗଲା– ଆଉ ପ୍ରାଣ ରହିବ ନାହିଁ। ତେଣୁ ସେ କହିଲେ– "ଜନ୍ ବିଶ୍ୱାସରାୟ ଆସି ପାଖରେ ବସନ୍ତୁ। ଜନ୍ ବିଶ୍ୱାସରାୟଙ୍କୁ ରାଜା ସବୁଠାରୁ ବେଶୀ ଭଲ ପାଉଥିଲେ। ଅତି ପିଲାଟିଦିନରୁ ଜନ୍ ତାଙ୍କ ବିଶ୍ୱାସୀ ଚାକର ହୋଇ ସେବା କରିଆସିଥିଲେ। ତେଣୁ ତାଙ୍କୁ ରାଜା ଅତି ଆଦରରେ 'ବିଶ୍ୱାସରାୟ' ଉପାଧି ଦେଇଥିଲେ। ସେ ଯେତେବେଳେ ଆସି ଶେଯ ପାଖରେ ବସିଲେ, ରାଜା କହିଲେ, "ବୁଝିଲ ବିଶ୍ୱାସରାୟ, ଶେଷକାଳ ଆସି ଉପସ୍ଥିତ ହୋଇଗଲା। ଜୀବନରେ ଆଉ କିଛି ବାକି ରଖିଯାଇନି, କିନ୍ତୁ ମୋ ପୁଅଟି ପାଇଁ ମନ ବ୍ୟାକୁଳ ହେଉଛି। ସେ ତ ଆହୁରି ପାରିନି। କେତେବେଳେ କଣ କରିବାକୁ ହେବ, ଆହୁରି ବୁଝିନି। ତୁମେ ମୋ ଦେହ ଛୁଇଁ କଥା ଦିଅ ଯେ, ତା ସାଙ୍ଗରେ କାୟା ପଛରେ ଛାୟା ଲାଗିଲା ପରି ଦିନରାତି ଲାଗି ତାକୁ ଭଲରେ ମନ୍ଦରେ ଶିକ୍ଷା ଦେଇ ମଣିଷ କରି ଠିଆକରାଇବ। ଠିକେ ଠିକେ କହିବାକୁ ଗଲେ ମୋ ଅନ୍ତେ ତୁମେହିଁ ତାର ବାପା ହେବ। ତୁମେ ମତେ କଥା ନ ଦେବାଯାଏ ମୁଁ ଶାନ୍ତିରେ ପ୍ରାଣ ଛାଡ଼ି ପାରୁ ନାହିଁ।

ବିଶ୍ୱାସରାୟ କହିଲେ, "ମଣିମାଙ୍କ କଥା ମୁଁ ଦିନେ ହେଲେ ତଳେ ପକାଇ ନାହିଁ। ମୁଁ କଥା ଦେଉଛି, କ୍ଷଣେ ହେଲେ ରାଜକୁମାରଙ୍କୁ ଛାଡ଼ିଯିବି ନାହିଁ। ପ୍ରାଣ ଗଲେ ସିନା ଯିବ, ମୁଁ ତାଙ୍କର ଅମଙ୍ଗଳ କରାଇ ଦେବି ନାହିଁ।"

ରାଜା ତାଙ୍କୁ ଧନ୍ୟ ଧନ୍ୟ କରି କହିଲେ, "ଆଃ, ଏଥର ମୁଁ ଶାନ୍ତିରେ ଶେଷ ନିଃଶ୍ୱାସ ଛାଡ଼ିବି। ହଁ, ଗୋଟିଏ କଥା– ମୋ ଅନ୍ତେ ତୁମେ ତାକୁ ନଅରରେ ଅନ୍ଦିକନ୍ଦି ବୁଲାଇ ଚାରିଆଡ଼େ ଦେଖାଇବ। ସବୁ କୋଠରି, ସବୁ ଗମ୍ଭୀରି, ସବୁ ଆଲମାରି ଖୋଲି ଯେଉଁଠି ଯାହା ଧନରତ୍ନ ମୁଁ ରଖିଛି, ସବୁ ତାକୁ ଚିହ୍ନାଇ ଦେବ। କିନ୍ତୁ ବଡ଼ ଚିତ୍ର ମହଲାର ଶେଷ କୋଠରିଟି ଖୋଲି ତାକୁ

ଦେଖାଇବ ନାହିଁ। ସେଠାରେ ସୁବର୍ଣ୍ଣପୁର ରାଜକନ୍ୟାର ଚିତ୍ରପଟ ରଖାଯାଇଛି। ପୁଅ ଯଦି ସେ ରାଜକନ୍ୟାର ଚିତ୍ରପଟ ଦେଖିଦେବ, ତେବେ କଥା ସରିଲା; ତାକୁ ଦେଖିଦେଲା ମାତ୍ରେ ମୂର୍ଚ୍ଛା ହୋଇଯିବ। ତାକୁ ଝୁରି ଝୁରି ସେ ପାଗଳ ହୋଇଯିବ; ନାହିଁ ଯଦି ବାହା ହେବାକୁ ବସେ, ତେବେ କେବେ ଶୁଣା ନ ଥିବା, ଜଣା ନ ଥିବା ବିପଦ ଆସି ପଡ଼ିଯିବ। ତେଣୁ ତୁମେ ତାକୁ ଗୋଡ଼େ ଗୋଡ଼େ ଜଗିଥିବ– ମୋ ପୁଅ ଯେପରି ସେ ବିପଦରେ ନ ପଡ଼େ!''

ଜନ୍ ବିଶ୍ୱାସରାୟ ପୁଣି ଥରେ ଶପଥ କରି, ରାଜା ଏ ବିଷୟରେ ନିଶ୍ଚିନ୍ତ ରହନ୍ତୁ ବୋଲି, କଥା ଦେଲେ। ଏଥର ରାଜାଙ୍କ ମୁହଁରୁ ଆଉ କଥା ବାହାରିଲା ନାହିଁ। ତକିଆ ଉପରେ ମୁଣ୍ଡଟି ରଖି ଯେ ଆଖି ବୁଜିଦେଲେ; ସେତିକି, ଆଉ ଖୋଲିଲେ ନାହିଁ।

ବୁଢ଼ା ରାଜାଙ୍କୁ ସମାଧି ଦିଆଯିବା ପରେ ରାଜାଙ୍କ ପୁଅ ନୂଆ ରାଜା ହୋଇ ସିଂହାସନରେ ବସିଲେ। ବିଶ୍ୱାସରାୟ ବୁଢ଼ା ରାଜାଙ୍କ ଆଗରେ କରିଥିବା ଶପଥ ବିଷୟ ଜଣାଇ ନୂଆ ରାଜାଙ୍କୁ କହିଲେ, ''ମଣିମା, ମୁଁ ଏପରି ଶପଥ କରିଛି, ଛାମୁଙ୍କ ଆଗରେ ବି ଶପଥ କରି କହୁଛି ଯେ, ମୁଁ ଯାହା କିଛି କରିବି ଛାମୁଙ୍କ ଭଲ ପାଇଁ କରିବି, ଯେପରି କି ମୋ ବିଶ୍ୱାସରାୟ ନାଆଁରେ କଳଙ୍କ ନ ଲାଗେ। କାଲି ସକାଳେ ମୁଁ ଛାମୁଙ୍କୁ ନେଇ ନଅର ଭିତରର ସବୁ ଜାଗା ବୁଲାଇ ଦେଖାଇବି।''

ତା ପରଦିନ ସକାଳୁ ସକାଳୁ ଜନ୍ ବିଶ୍ୱାସରାୟ ଚାବିଲେନ୍ଥା ଧରି ବାହାରି ପଡ଼ିଲେ। ନୂଆ ରାଜାଙ୍କୁ ନେଇ ନଅରର ତଳ ମହଲା ଉପର ମହଲା ସବୁ ଜାଗା ଦେଖାଇବାକୁ ଲାଗିଲେ। ଗୋଟି ଗୋଟି କରି ସବୁ କୋଠରି ଫିଟାଯାଉଥାଏ। ନୂଆ ରାଜା ସେ ଭିତରେ ଥିବା ଧନରତ୍ନ ସବୁ ହାତ ମାରି ଦେଖୁଥାନ୍ତି। କି ସୁନ୍ଦର ହୋଇଥାଏ ସେ ସବୁ କୋଠରି! କେତେ କାଳରୁ କେତେ ଧନରତ୍ନ ସେ ଭିତରେ ସାଇତା ନ ହୋଇଥାଏ! ସବୁ ଦେଖି ଦେଖି ଯାଉ ଯାଉ ବଡ଼ ଚିତ୍ର ମହଲାର ଶେଷ କୋଠରିଟି ପଡ଼ିଲା। ବିଶ୍ୱାସରାୟ ସେ କୋଠରିଟି ନ ଖୋଲି ଅନ୍ୟ ଆଡ଼େ ବୁଲିଗଲେ। ରାଜା ପଚାରିଲେ, ''ଦାଦା, ଏଇଟା ଖୋଲିଲ ନାହିଁ?'' ବିଶ୍ୱାସରାୟ ଶୁଣି ନ ଶୁଣିଲା ପରି କହିଲେ, ''ଏଣେ ଦେଖନ୍ତୁ, ଏ କୋଠରିଟି ବଡ଼ ଚମତ୍କାର ହୋଇଛି।'' କହୁ କହୁ ସେ ଆଉ ଗୋଟିଏ କୋଠରି ଖୋଲିଦେଲେ। ରାଜା ସେଠାକୁ ଯାଇ ଦେଖିଲେ ସତ, କିନ୍ତୁ ସେ ଭିତରୁ ବାହାରୁ ବାହାରୁ ଚିତ୍ର ମହଲା କୋଣର କୋଠରିରେ କଣ ଅଛି ବୋଲି ପଚାରିବସିଲେ। ବିଶ୍ୱାସରାୟ କଥାଟାକୁ ବାଆଁରେଇ ଦେଇ ଅନ୍ୟ ଗୋଟିଏ କୋଠରି ଖୋଲିଦେଲେ; କିନ୍ତୁ ରାଜା ଆଉ ସେଠାରୁ ନ ଯାଆନ୍ତି। କୋଣ କୋଠରିଟି

ଦେଖିବା ଲାଗି ସେ ଜିଦ୍ ଧରି ବସିଲେ। ବିଶ୍ୱାସରାୟ କେତେ ବୁଝାଇଲେ; କୌଣସିଥିରେ କିଛି ଫଳ ହେଲା ନାହିଁ। ରାଜାଙ୍କର ଏକା ଜିଦ୍, ସେ ସେହି କୋଠରିଟି ଦେଖିବେ। ଶେଷକୁ ବିଶ୍ୱାସରାୟ କହିଲେ, "ମଣିମା, ମହାରାଜ ମରିବା ପୂର୍ବରୁ ସେ ମୋ ହାତରେ ଶପଥ କରାଇଥିଲେ ଯେ ଛାମୁଙ୍କୁ ମୁଁ ଏ କୋଠରିଟି ଖୋଲି ଦେଖାଇବି ନାହିଁ। ଏକୁ ଖୋଲି ଦେଖିଲେ ଛାମୁ ଓ ମୁଁ ଦିହେଁ ଘୋର ବିପଦରେ ପଡ଼ିଯିବା।"

କିନ୍ତୁ ରାଜା କହିଲେ, "ସେ କଥା ଆଉ କହ ନାହିଁ ଦାଦା; ବରଂ ଜାଣି ରଖ ଯେ, ଏ କୋଠରିଟି ନ ଦେଖିବାହିଁ ମୋ ପକ୍ଷରେ ସବୁଠାରୁ ବଡ଼ ବିପଦ ହେବ। ଏ ଭିତରେ କଣ ଅଛି, ନ ଦେଖିବା ପର୍ଯ୍ୟନ୍ତ କି ଦିନ କି ରାତି ମୁଁ ଶାନ୍ତିରେ ବସି-ଉଠି ପାରିବି ନାହିଁ।"

ଫଳରେ ଜନ୍ ବିଶ୍ୱାସରାୟ ନାଚାର ହୋଇ ଚାବିଲେଛାରୁ ଖୋଜି ସେ କୋଠରିର ଚାବିଟି ବାହାର କଲେ। ଦୀର୍ଘନିଃଶ୍ୱାସ ମାରି ଚାବି ଖୋଲୁଛନ୍ତି, ତାଙ୍କୁ ଗୋଟିଏ ବୁଦ୍ଧି ଦେଖାଗଲା। ଭାବିଲେ, ମୁଁ ଯାଇ ରାଜକୁମାରୀର ଚିତ୍ରପଟ ଆଗରେ ଠିଆହୋଇଯିବି ଯେ, ରାଜା ଆଉ ତାହା ଦେଖିପାରିବେ ନାହିଁ। ତେଣୁ କବାଟ ଖୋଲୁ ଖୋଲୁ ସେ ଯାଇ ଚିତ୍ରପଟଟିକୁ ଆଡୁଆ କରି ଠିଆହୋଇଗଲେ। କିନ୍ତୁ ମଣିଷ ଯେଉଁଥିକୁ ଡରୁଥାଏ, ସେଇଆ ଘଟେ। ରାଜାଙ୍କ ନଜର ଆଉ କେଉଁଆଡ଼େ ନ ପଡ଼ି, ପଡ଼ିଲା ଯାଇ ସେହି ଚିତ୍ରପଟ ଉପରେ। ସେ ବିଶ୍ୱାସରାୟଙ୍କୁ ଆଡ଼େଇ ଦେଇ ଚିତ୍ରପଟଟିକୁ ଚାହିଁରହିଲେ। କି ସୁନ୍ଦରୀ ସତେ ସେ ରାଜକନ୍ୟା! ଚିତ୍ରପଟଟି ହେଲେ କଣ ହେଲା, ଦେଖିଲେ ଲାଗୁଥାଏ, ସତେ ଯେପରି ରାଜକନ୍ୟାର ଦେହ-ମୁହଁରୁ ସୁନା ଝରିପଡୁଥାଏ! ରାଜା ତ ତାଙ୍କୁ ଦେଖୁ ଦେଖୁ ଏପରି ମୋହିହୋଇଗଲେ ଯେ, ଚାହୁଁ ଚାହୁଁ ସେ ମୂର୍ଚ୍ଛା ହୋଇ ପଡ଼ିଗଲେ। ବିଶ୍ୱାସରାୟ ତ ପୂର୍ବରୁ ଏ କଥା ଶୁଣିଥିଲେ, ସେ ଆଉ ବିଳମ୍ବ ନ କରି ସଙ୍ଗେ ସଙ୍ଗେ ରାଜାଙ୍କୁ ଟେକିନେଇ ପଲଙ୍କରେ ଶୁଆଇ ଦେଲେ। ବୈଦ୍ୟ କବିରାଜ ଆସି ପହଞ୍ଚିଲେ। ଔଷଧ ମହୌଷଧ, ପଣାପାଣି ଦେଇ ବହୁ ଚେଷ୍ଟା କରିବା ପରେ ରଜାଙ୍କ ଚେତା ଫେରିଲା। କିନ୍ତୁ ଚେତା ଫେରୁ ଫେରୁ ସେ ଜନ୍ ବିଶ୍ୱାସରାୟଙ୍କୁ କହିଲେ, "ଆହା, କି ସୁନ୍ଦରୀ ସେ ରାଜକନ୍ୟା! ସତ କୁହ ଦାଦା, ସେ କେଉଁ ଦେଶର ରାଜକନ୍ୟା?"

ବୁଢ଼ା ରାଜା ଯେଉଁ ସନ୍ଦେହ କରିଥିଲେ, ତାହାହିଁ ଘଟିଲା। ରାଜା ସେହି ରାଜକନ୍ୟାଙ୍କୁ ବିବାହ କରିବାକୁ ମନ କରି ତାଙ୍କ ବିଷୟରେ ଗୋଟି ଗୋଟି କରି ସବୁ ବିଷୟ ପଚାରି ବୁଝିଲେ। ବିଶ୍ୱାସରାୟ ତ ସବୁ ଜାଣନ୍ତି; ସେ କହିଲେ, "ମଣିମା, ସେ [illegible]ଉଛନ୍ତି ସ୍ୱର୍ଣ୍ଣପୁରର ରାଜକନ୍ୟା। ତାଙ୍କୁ ପାଇବା

ଛାମୁଙ୍କ ପକ୍ଷରେ ସମ୍ଭବ ନୁହେଁ। ବୃଥା କଥାଟାରେ ଏପରି ବାତୁଳ ହୁଅନ୍ତୁ ନାହିଁ।''

ରାଜା ଜିଦ୍ ଧରି ବସିଲେ। ପଚାରିଲେ, ''କାହିଁକି ? ଅସମ୍ଭବ କାହିଁକି ?''

ବିଶ୍ୱାସରାୟ କହିଲେ, ''ମଣିମା, ସୁବର୍ଣ୍ଣପୁର ହେଲା ସୁନାର ଦେଶ। ସୁନାହିଁ ସେଠାର ଲୋକଙ୍କୁ ମୁଗ୍ଧ କରିପାରେ। ଆମେ କଣ ଏତେ ସୁନା ଦେଇପାରିବା ଯେ, ସେଠା ରାଜକନ୍ୟାଙ୍କୁ ପାଇବା ପାଇଁ ଆଶା କରିବା ?''

ରାଜା କହିଲେ, ''ଆମର ଯେତେ ସୁନା ଅଛି ସବୁ ବାହାର କର, ସବୁ ଦେଇଦେବା। ଆମର କେତେ ସୁନା ଥାଇପାରେ ?''

ରାଜାଙ୍କର ଏପରି ଜିଦ୍ ଦେଖି ଜନ୍ ବିଶ୍ୱାସରାୟ କହିଲେ, ''ମଣିମା, ଆମର ପ୍ରାୟ ପାଞ୍ଚଶହ ବସ୍ତା ସୁନା ଥିବ। ମଣିମା ଯଦି ଏତେ ଅଡ଼ିବସୁଛନ୍ତି, ତେବେ ରାଜ୍ୟରେ ଯେତେ ବଣିଆ ସୁନାରି ଅଛନ୍ତି, ସେମାନଙ୍କୁ ଡକାଇ ଏ ସବୁ ସୁନାରେ ବିଭିନ୍ନ ପ୍ରକାର ପଶୁପକ୍ଷୀ, ବିଭିନ୍ନ ପ୍ରକାର ଫୁଲଫଳ ଓ ମନୋହର ଜିନିଷ ତିଆରି କରିଦେବା। ସେ ସବୁ ଧରି ଆମେ ଗୋଟିଏ ଜାହାଜରେ ସୁବର୍ଣ୍ଣପୁର ଚାଲିଯିବା। ତା'ପରେ କଣ ହେବ, ଦେଖିବା।''

ରାଜା ତ ସେ ରାଜକନ୍ୟାଙ୍କୁ ପାଇବା ପାଇଁ ଆଶା କରି ବସିଥା'ନ୍ତି, ଏ ପ୍ରସ୍ତାବରେ ରାଜିହୋଇ ସେ ରାଜ୍ୟର ସବୁ ସୁନାରି, ସବୁ ବଣିଆଙ୍କୁ ଡକାଇ ଆଣିଲେ। ନଅର ଭିତରେ ଶହ ଶହ ଶାଳ ବସିଲା। ସେ କାରିଗରମାନେ ନିଜନିଜର ବିଦ୍ୟା ବୁଦ୍ଧି ଖଟାଇ ସୁନ୍ଦର ସୁନ୍ଦର ପଶୁପକ୍ଷୀ, ସୁନ୍ଦର ସୁନ୍ଦର ଫୁଲଫଳ, ସୁନାର ଜାତିଜାତିକା ମନୋହରି ଜିନିଷ ତିଆରି କରିପକାଇଲେ। ସେପଟେ ବିଶ୍ୱାସରାୟ ଖଣ୍ଡିଏ ମଜବୁତ୍ ଜାହାଜ ଗଢ଼ିବା ଲାଗି ବରାଦ କରି ଦେଇଥାନ୍ତି। ସୁନା ଜିନିଷ ତିଆରି ସରିବା ବେଳକୁ ଜାହାଜ ବି ତିଆରି ହୋଇଗଲା। ନୂଆ ଜାହାଜରେ ଏ ସବୁ ସୁନା ଜିନିଷ ଭରି କରି ରାଜା ଓ ଜନ୍ ବିଶ୍ୱାସରାୟ ସୁବର୍ଣ୍ଣପୁରକୁ ବାହାରି ପଡ଼ିଲେ। କିଛି ଦିନ ଅନ୍ତେ ଜାହାଜ ଯାଇ ସୁବର୍ଣ୍ଣପୁର ଦ୍ୱୀପରେ ଲାଗିଗଲା। ବିଶ୍ୱାସରାୟ ରାଜାଙ୍କୁ କହିଲେ, ''ଛାମୁ, ଜାହାଜରେ ରହନ୍ତୁ, ମୁଁ କିଛି ସୁନାର ମନୋହରି ଜିନିଷ ଧରି ସୁବର୍ଣ୍ଣପୁର ନଅରକୁ ଯାଉଛି। ରାଜକନ୍ୟାଙ୍କୁ ସୁନା ଜିନିଷ ଦେଖାଇବା ଲାଗି ମୁଁ ଜାହାଜକୁ ଆଣୁଛି। ଏଠାରେ ଦେଖାଦେଖି ହେବେ, ତା'ପରେ ଅନ୍ୟ କଥା।''

ଭଲ ଭଲ ମନୋହରି ଜିନିଷ କିଛି ଧରି ବିଶ୍ୱାସରାୟ ଯାଇ ସୁବର୍ଣ୍ଣପୁର ନଅରରେ ପହଞ୍ଚିଗଲେ। ସେଠାରେ ଦେଖିଲେ, ଗୋଟିଏ ସୁନ୍ଦରୀ ଝିଅ ଦୁଇଟି ସୁନା ଗରିଆରେ ଦୁଇ ଗରିଆ ପାଣି ଧରି ନଅର ଭିତରକୁ ଯାଉଛି। ନଅର ଦୁଆରେ ବିଶ୍ୱାସରାୟଙ୍କୁ ଦେଖି ସେ ଝିଅ ପଚାରିଲା, ''ତୁମେ କିଏ ? ଏଠାରେ ତୁମର କି କାମ ?''

ବିଶ୍ୱାସରାୟ କହିଲେ– "ମୁଁ ଜଣେ ସୁନାବେପାରୀ। ଦେଖ, ମୁଁ କି ସୁନ୍ଦର ଜିନିଷସବୁ ବିକିବାକୁ ଆଣିଛି।" କହୁ କହୁ ସେ ନିଜ ଥଳି ଖୋଲି ସୁନାର ମନୋହରି ଜିନିଷ କେତୋଟି ଦେଖାଇଦେଲେ। ଝିଅଟି ଏସବୁ ଦେଖି ଏତେ ଖୁସି ହୋଇଗଲା ଯେ, କହିଲା, "କି ବଢ଼ିଆ ହୋଇଛି! ଆମ ଜେମା ଦେଖିଲେ ନିଶ୍ଚୟ କିଣିପକାଇବେ। ଆସ, ଭିତରକୁ ଆସ।" ସେ ଝିଅଟି ଥିଲା ରାଜକନ୍ୟାର ସଖୀ। ବିଶ୍ୱାସରାୟ ଯାଇ ଅନ୍ତଃପୁରରେ ପହଞ୍ଚିଗଲେ। ସେ ନେଇଥିବା ମନୋହରି ଜିନିଷଗୁଡ଼ିକ ଦେଖି ଦେଉ ଦେଉ ରାଜକୁମାରୀ ଲୋଭ ସମ୍ଭାଳି ପାରିଲେ ନାହିଁ। କହିଲେ, ସବୁଗୁଡ଼ିକ କିଣି ପକାଇବେ। କିନ୍ତୁ ବିଶ୍ୱାସରାୟ କହିଲେ, "ମଣିମା, ମୁଁ ତ ଅସଲ ମାଲିକ ନୁହେଁ। ଆମ ମାଲିକଙ୍କ ସୁନାବୁହା ଜାହାଜ ଆସି ବନ୍ଦରରେ ଲାଗିଛି। ମୁଁ କିଛି ନମୁନା ନେଇ ଛାମୁଙ୍କୁ ଦେଖାଇବାକୁ ଆସିଥିଲି। ଏ ସବୁ ସାମାନ୍ୟ ଜିନିଷ; ଜାହାଜରେ ଆହୁରି କେତେ ଜିନିଷ ଅଛି, ତାହା ମୁଁ ବର୍ଣ୍ଣନା କରିପାରୁ ନାହିଁ।"

ରାଜକନ୍ୟା କହିଲେ, "ତା'ହେଲେ ସେସବୁ ଆଣି ଦେଖାଅ; ଆମ ପସନ୍ଦକୁ ଆସିଲେ ଆମେ କିଣିବା।"

ବିଶ୍ୱାସରାୟ ଦେଖିଲେ ଔଷଧ ଠିକ୍ ଧରିଛି। ସେ କହିଲେ, "ମଣିମା, ଜାହାଜରେ କେତେ ନାହିଁ କେତେ ବଖରାରେ ଜିନିଷଗୁଡ଼ିକ ସଜାହୋଇ ରଖାଯାଇଛି। ସେ ସବୁକୁ ବୋହିଆଣି ଏଠାରେ ସଜାଇଲେ ମଣିମାଙ୍କ ନଅରରେ ଜାଗା ହେବ ନାହିଁ; ପୁଣି ନେବା ଆଣିବା ଯେ କେତେ କଷ୍ଟକର ତାହା ମଣିମା ବୁଝିପାରୁଥିବେ! ଯଦି ଟିକିଏ କଷ୍ଟ କରନ୍ତେ, ତେବେ ଆମ ଜାହାଜକୁ ବିଜେ କରନ୍ତୁ। ସବୁ ନିଜ ଆଖିରେ ଦେଖି ଆସିବେ। ନ କିଣନ୍ତୁ ପଛେ, ଛାମୁଙ୍କ ପରି ଗୁଣୀ ଲୋକ ଦେଖିଦେଲେ ଆମେ ନିଜକୁ ଧନ୍ୟ ମଣିବୁ। ନା ଯଦି କିଣିବେ, ତେବେ ସେଠାରେ ଖୋଦ୍ ମାଲିକ ଅଛନ୍ତି, ଦରଦାମ୍ କରି କିଣିବେ। ମୁଁ ସାମାନ୍ୟ ଚାକରଟାଏ। କ୍ଷମା କରିବେ, ମୋର ବିକିବା ଅଧିକାର ନାହିଁ।"

ଏ କଥା ଶୁଣି ରାଜକନ୍ୟା ସୁନା ଜିନିଷ ଦେଖିବେ ବୋଲି ଜାହାଜକୁ ଚାଲିଗଲେ। ତାଙ୍କୁ ପାଛୋଟି ନେବା ଲାଗି ତ ରାଜା ସଜ ହୋଇ ବସିଥିଲେ। ମହା ଆଡ଼ମ୍ବରରେ ପାଛୋଟି ନେଇ ଜାହାଜର କୋଠରି କୋଠରି ବୁଲାଇ ସୁନା ଜିନିଷଗୁଡ଼ାକ ଦେଖାଇବାକୁ ଲାଗିଲେ। ରାଜକନ୍ୟା ସୁନାର ପଶୁପକ୍ଷୀ, ଗଛଲତା, ଫୁଲଫଳ ଦେଖି ଏପରି ମୋହିହୋଇଗଲେ ଯେ, ଦେଖୁ ଦେଖୁ କେତେ ସମୟ କଟିଗଲା ଜାଣିପାରିଲେ ନାହିଁ। ରାଜା ଦେଖିଲେ, ରାଜକନ୍ୟା ଚିତ୍ରପଟରେ ଯେତେ ସୁନ୍ଦରୀ ଦେଖା ଯାଉଥିଲେ, ପ୍ରକୃତରେ ତା ତହୁଁ ଢେର୍ ଅଧିକ ସୁନ୍ଦରୀ। ସୁନାର ଝଲକଠାରୁ ବି ତାଙ୍କ ରୂପର ଝଲକ ବେଶି। ଏପରି ଦେଖାଚାହାଁ ଚାଲିଛି,

ରାଜକନ୍ୟା ଶତମୁଖ ହୋଇ ସୁନା ଜିନିଷର ପ୍ରଶଂସା କରିଚାଲିଛନ୍ତି, ସେପଟେ କଣ ହେଲା ନା, ବିଶ୍ୱାସରାୟ ମଉକା ଦେଖି ଜାହାଜର ବଡ଼ ମାଝିକୁ କହିଦେଲେ, "ଦିଅ, ଜାହାଜର ସବୁ ପାଲ ଟାଙ୍ଗିଦିଅ। ଏପରି ଜାହାଜ ଚଳାଇ ନିଅ ଯେ ପବନ ବେଗରେ ଏଠାରୁ ପଳାଇଯାଉ।" ତେଣୁ ଏ ଭିତରେ କେହି ଜାଣିବା ଆଗରୁ ଜାହାଜ ସୁବର୍ଣ୍ଣ ଦ୍ୱୀପ ଛାଡ଼ି ଉଡ଼ାଜାହାଜ ପରି ଉଡ଼ିଚାଲିଲା। କିଛି ସମୟ ପରେ ରାଜକନ୍ୟା ଜାଣିପାରିଲେ ଯେ ଜାହାଜଟା ସୁବର୍ଣ୍ଣ ଦ୍ୱୀପ ଛାଡ଼ି ଦୂରକୁ ଚାଲିଯାଉଛି। ସେ ପାଟିତୁଣ୍ଡ କରି ଖଣ୍ଡମଣ୍ଡଳ କମ୍ପାଇ ଦେଲେ। ଚୋର ବଦମାସ୍ ବୋଲି ଗାଳିଗୁଲଜ କରି କହିଲେ, ଛାର ଗୋଟାଏ ବେପାରୀ ମତେ ଇମିତି ଧରିପକାଉଛୁ; ଫଳ କିଛି ଭଲ ହେବ ନାହିଁ। ଜାହାଜ ଲେଉଟାଇ ନିଅ, ନ ହେଲେ ମୁଁ ସମୁଦ୍ରକୁ ଡେଇଁ ବୁଡ଼ିମରିବି କହୁଛି।"

ବିଶ୍ୱାସରାୟ ସେଠାରେ ଛକିଥା'ନ୍ତି। ସେ କହିଲେ, "ମଣିମା, ଛାମୁ ଭୁଲ ବୁଝିଛନ୍ତି। ମୋ ମାଲିକ ବେପାରୀ ନୁହନ୍ତି; ସେ ମଧ୍ୟ ଜଣେ ରାଜା। ଛାମୁଙ୍କୁ ପାଇବା ଲାଗି ସେ ଏତେ ସମ୍ପଦ ଧରି ଆସିଥିଲେ।" ରାଜା କହିଲେ, "ରାଜକୁମାରୀ, ତୁମ ଚିତ୍ରପଟ ଦେଖିବା ଦିନୁ ମୁଁ ଶପଥ କରିଛି ଯେ ହୁଏତ ତୁମକୁ ବିବାହ କରିବି, ନଚେତ୍ ଜୀବନ ରଖିବି ନାହିଁ।" ଏ ସବୁ ଶୁଣି ରାଜକନ୍ୟା ଆଶ୍ୱସ୍ତ ହେଲେ। ରାଜା ବି ତ ଦେଖିବାକୁ ଖୁବ୍ ସୁନ୍ଦର, ପୁଣି ଏତେ ସମ୍ପଦର ଅଧିକାରୀ! ତେଣୁ ରାଜକନ୍ୟା ବିବାହ ପ୍ରସ୍ତାବରେ ରାଜି ହୋଇଗଲେ। ଖୁବ୍ ଆନନ୍ଦ ଉତ୍ସବ ଭିତରେ ଜାହାଜ ଘରମୁହାଁ ହୋଇ ଚାଲିଲା।

ଦିନେ କଣ ହୋଇଛି– ଜନ୍ ବିଶ୍ୱାସରାୟ ଜାହାଜ ଅଗଣାରେ ବସି ପବନ ଖାଉଛନ୍ତି, ଏ ସମୟରେ ତିନୋଟି କୁଆ ଉଡ଼ିଆସି ଜାହାଜ ମାସ୍ତୁଲରେ ବସିଲେ। ବିଶ୍ୱାସରାୟ ଚଢ଼େଇ-ଚିରୁଗୁଣୀଙ୍କ କଥାଭାଷା ବୁଝିପାରନ୍ତି। କୁଆମାନେ କଣ କୁହାକୁହି ହେଉଛନ୍ତି ବୋଲି ସେ କାନେଇଲେ। ଶୁଣିଲେ, ପ୍ରଥମ କୁଆ କହୁଛି, "ଏ ରାଜା ରାଜକନ୍ୟାକୁ ନେଇ ଯାଉଛି ସତ, ହେଲେ ବାହା ହୋଇପାରିବ ନାହିଁ।"

ଦ୍ୱିତୀୟ କୁଆ ପଚାରିଲା, "କାହିଁକି? ରାଜକନ୍ୟା ତ ବାହାହେବାକୁ ରାଜି ହେଲାଣି; ଅସୁବିଧା ଆଉ କଣ?"

ପ୍ରଥମ କୁଆ କହିଲା, "କଥା କଣ କି, ଏ ଜାହାଜ ଯାଇ ତାଙ୍କ ଦେଶରେ ଲାଗିଲାମାତ୍ରେ ରାଜା ତ ଖୁସିରେ ନଅରକୁ ଚାଲିଯିବେ। କିନ୍ତୁ ଜାହାଜରୁ ଓହ୍ଲାଉ ଓହ୍ଲାଉ ଗୋଟିଏ ପକ୍ଷିରାଜ ଘୋଡ଼ା ଆସି ସେଠାରେ ଠିଆହୋଇଯିବ। ରାଜା ଭାବିବେ, ସେ ଘୋଡ଼ାରେ ବସି ନଅରକୁ ଗଲେ ସୁନ୍ଦର ଦେଖାଯିବ। ତେଣୁ ସେ ଯାଇ ଘୋଡ଼ାରେ ବସିପଡ଼ିବେ। କିନ୍ତୁ ସେ ଯାଇ ବସୁ ବସୁ ପକ୍ଷିରାଜ ଘୋଡ଼ା ତାଙ୍କୁ ପବନବେଗରେ ଉଡ଼ାଇ ନେବ ଯେ, ସେ ନଅରକୁ କଣ ଯିବେ,

କୁଆଡ଼େ ନାହିଁ କୁଆଡ଼େ ଚାଲିଯିବେ, ତାର ପତ୍ତା ମିଳିବ ନାହିଁ। ଆଉ ବାହା କଣ ହେବେ ?''

—''ସତେ ! ଆଚ୍ଛା, ଏ ବିପଦରୁ କଣ ରକ୍ଷା ମିଳିବ ନାହିଁ?''

—''ହଁ, ଯଦି ରାଜା ଯାଇ ଘୋଡ଼ାରେ ବସିବା ପୂର୍ବରୁ ଅନ୍ୟ କେହି ଜଣେ ଘୋଡ଼ା ଉପରକୁ ଡେଇଁପଡ଼ି ତା' ଜିନ୍‌ରେ ଲାଗିଥିବା ଖଣ୍ଡାରେ ଘୋଡ଼ାଟାକୁ ହାଣିଦେବେ, ତେବେ ସେ ଘୋଡ଼ା ମରିଯିବ, ରାଜା ବିପଦରୁ ବର୍ତ୍ତିଯିବେ; କିନ୍ତୁ ଏ କଥା ଜାଣେ କିଏ ଯେ, କରିବ ? ଯେ ବା ଜାଣି କରିବ, ସେ ଯଦି ଏକଥା କାହାକୁ କହିଦେବ, ତେବେ ସେଇଠି ସେହିଲାଗେ ପଥର ପାଲଟିଯିବ।''

ଏ ସବୁ ଶୁଣି ତୃତୀୟ କୁଆ କହିଲା, ''ଆରେ, ସେତିକିରେ କଣ ବାହା ହୋଇଯିବେ ? ଆହୁରି ବିପଦ ଅଛି, ସେ କଥା ମୁଁ ଜାଣେ।''

ଅନ୍ୟ ଦୁଇ କୁଆ ପଚାରିଲେ, ''କଣ କଣ, କହିଲ ?''

ତୃତୀୟ କୁଆ କହିଲା, ''ବାହାଘର ପାଇଁ ସବୁ ଠିକ୍‌ଠାକ୍ ହୋଇଯିବା ପରେ ରାଜା ବରବେଶ ହେବା ପାଇଁ ନୂଆ ପୋଷାକ ପିନ୍ଧିବେ ନା, ନୁହେଁ ? —କିନ୍ତୁ ସେ ପିନ୍ଧିବା ଲାଗି ଯେଉଁ ନୂଆ ପୋଷାକ ଆସିଥିବ, ସେ ସବୁ ଖାଲି ଜଉ ଓ ବାରୁଦରେ ତିଆରି ହୋଇଥିବ। ଦେଖିବାକୁ ଖୁବ୍ ରଙ୍ଗଢଙ୍ଗିଆ, ଖୁବ୍ ଚକମକିଆ ହୋଇଥିବ ସତ, ହେଲେ ରାଜାଙ୍କ ଦେହରେ ଲାଗିଯିବାମାତ୍ରେ ସେ ପୋଷାକ ଜଳିଉଠିବ ଯେ ରାଜା ସେଥିରେ ପୋଡ଼ି ପାଉଁଶ ହୋଇଯିବେ। ଆଉ ବାହା କଣ ହେବେ ?''

ଦ୍ୱିତୀୟ କୁଆ କହିଲା, ''ଏ ତା'ହେଲେ ଇମିତି ସାରୁ ଭିତରେ ମାରୁ ରହିଛି ? ଆଚ୍ଛା, ଏ ବିପଦରୁ ବର୍ତ୍ତିବାର କିଛି ଉପାୟ ନାହିଁ?''

ତୃତୀୟ କୁଆ କହିଲା, ''ନାହିଁ କାହିଁକି ? କରି ପାରିଲେ ଅଛି। ଯଦି ରାଜା ସେ ପୋଷାକ ପିନ୍ଧିବା ପୂର୍ବରୁ ଆଉ କେହି ଯାଇ ପୋଷାକଟି ନେଇ ନିଆଁରେ ମାଡ଼ିଦିଏ, ତେବେ ସେ ପୋଷାକ ସେଠାରେ ପୋଡ଼ିଯିବ। କିନ୍ତୁ ଏ କଥା ଜାଣେ କିଏ ଯେ, କରିବ ? ଯେ ବା କରିବ, ସେ ଯଦି କାହା ଆଗରେ କହିଦେବ, ତେବେ ମୁହୂର୍ତ୍ତକ ଭିତରେ ପଥର ପାଲଟିଯିବ।''

ଏଥର ପ୍ରଥମ କୁଆ କହିଲା, ''ଏତିକିରେ କଣ ସରିଲା ? ମତେ ତ ଆହୁରି ଗୋଟିଏ ବିପଦ ଦେଖାଯାଉଛି, ସେ ବିପଦ କଟିବାର ନୁହେଁ।''

—''କଣ କହିଲ ?''

—''ବାହାଦିନ ଯେଉଁ ବଲ୍-ନାଚ ହେବ, ସେଥିରେ ରାଜା ରାଜକନ୍ୟାଙ୍କ ସହିତ ନାଚିବେ। କିନ୍ତୁ ରାଜକନ୍ୟା ନାଚରେ ଦି' ଘେରା ବୁଲିଥିବେ କି ନାହିଁ, ମୁଣ୍ଡ ବୁଲାଇ ଦେବ ଯେ ମୂର୍ଚ୍ଛା ହୋଇ ପଡ଼ିଯିବେ। ସଙ୍ଗେ ସଙ୍ଗେ ଦେହ

ଶେତା ପଡ଼ିଯିବ, ମରିଯିବେ ଜାଣ।''

–''ଓଃ, ତା'ହେଲେ ସବୁ ସୁଖସ୍ୱପ୍ନ ଭାଙ୍ଗିଯିବ! ଆଚ୍ଛା, ଏ ବିପଦରୁ ବର୍ତ୍ତିବାର କିଛି ଉପାୟ ନାହିଁ ନା ?''

ପ୍ରଥମ କୁଆ କହିଲା, ''ଅଛି ଅଛି, କିନ୍ତୁ କରିବ କିଏ ? ଯଦି ରାଜକନ୍ୟା ମୂର୍ଚ୍ଛା ହୋଇ ପଡ଼ିଯିବାକ୍ଷଣି କେହି ଜଣେ ତାଙ୍କୁ ଟେକି ନେଇ ଶେଯରେ ଶୁଆଇଦେବ ଏବଂ ତାଙ୍କ ଛାତି ଖୋଲି ଡାହାଣ ସ୍ତନରୁ ତିନିଟୋପା ରକ୍ତ ଶୋଷି ନେଇ ତଳେ ପକାଇଦେବ, ତେବେ ରାଜକନ୍ୟା ବଞ୍ଚିଯିବେ। ସୁରୁଖୁରୁରେ ବାହାଘର ହୋଇଯିବ। କିନ୍ତୁ ଏ କଥା ଜାଣେ କିଏ ? ଯେ ବା ଜାଣି ଏତକ କରିଦେବ, ଯେ ଯଦି କାହାରିକୁ କହିଦେବ, ସେ ପଥର ପାଲଟିଯିବ।''

ଏପରି କଥାଭାଷା ହୋଇ କୁଆ ତିନୋଟି ମାସ୍ତୁଲରୁ ଉଡ଼ି ଚାଲିଗଲେ। ବିଶ୍ୱାସରାୟ ଏ ସବୁ ଶୁଣି କାବା ହୋଇଗଲେ। ରାଜାଙ୍କୁ ଏ ସବୁ ବିପଦରୁ କିପରି ରକ୍ଷା କରିବେ, ସେହି ହେଲା ସମସ୍ୟା। ଶେଷକୁ ଦେଖିଲେ ଅନ୍ୟ ଉପାୟ ନାହିଁ; ତାଙ୍କୁହିଁ ଏସବୁ କରିବାକୁ ପଡ଼ିବ। କିଛି ଦିନ ଭିତରେ ଜାହାଜ ଯାଇ ରାଜାଙ୍କ ରାଜ୍ୟରେ ପହଞ୍ଚିଗଲା। ରାଜା ଜାହାଜରୁ ଓହ୍ଲାଇ ନଅରକୁ ଯିବାକୁ ବସିଛନ୍ତି, ଯତକୁ ଯତ ଗୋଟିଏ ଧଳା ଫରଫର ପକ୍ଷିରାଜ ଘୋଡ଼ା ଆସି ସେଠାରେ ଠିଆ ହୋଇଗଲା। ସେ ଘୋଡ଼ାକୁ ଦେଖି ରାଜା କହିଲେ, ''ଭଲ ହୋଇଛି, ମୁଁ ଏହି ଘୋଡ଼ା ଚଢ଼ି ନଅରକୁ ଯିବି।'' କିନ୍ତୁ ସେ ଘୋଡ଼ା ଚଢ଼ିବାକୁ ବସିଛନ୍ତି, ଜନ୍ ବିଶ୍ୱାସରାୟ ପଛରୁ ଧସେଇପଶି ଘୋଡ଼ା ଉପରକୁ ଡେଇଁ ପଡ଼ିଲେ ଏବଂ ଲୋକେ ହାଁ ହାଁ କରୁଛନ୍ତି – ଘୋଡ଼ା ଜିନ୍‌ରୁ ଖଣ୍ଡା ଟାଣିଆଣି ସେ ଏପରି ଏକ ଚୋଟ ବସାଇଲେ ଯେ, ଘୋଡ଼ାର ମୁଣ୍ଡ ଗଣ୍ଡି ଦୁଇ ଗଡ଼ ହୋଇଗଲା।

ଲୋକଙ୍କ ଭିତରେ ବିଶ୍ୱାସରାୟଙ୍କ ବିରୋଧୀ ଲୋକ ବି ଥିଲେ। ସେମାନେ ଏ ଘଟଣାର ନିନ୍ଦା କରି କହିବାକୁ ଲାଗିଲେ, ''ଦେଖ ଦେଖ, ଲୋକଟାର ବହପ ଦେଖ! ମହାରାଜା ଚଢ଼ିବେ ବୋଲି ପକ୍ଷିରାଜ ଘୋଡ଼ା ଆପଣଛାଏଁ ଆସି ପିଠି ଦେଖାଇଥିଲା, ହୁଏତ ଏ ଲୋକ ସେତକ ସହି ନ ପାରି ଘୋଡ଼ାଟାକୁ ପ୍ରାଣରେ ମାରିଦେଲା। ରାଜଦ୍ରୋହୀ ଆଉ କାହାକୁ କହନ୍ତି. . . ?''

କିନ୍ତୁ ରାଜା ଏ ସବୁ କଥାରେ କାନ ଦେଲେ ନାହିଁ; ବରଂ କହିଲେ, ''ଚୁପ୍ କର। ଦାଦା ଯାହା କରନ୍ତି, ସବୁ ମୋର ଭଲ ପାଇଁ କରନ୍ତି। ସେ କିଛି ବୃଥାରେ ଏ ଭଳି ମାରିନାହାନ୍ତି, ତା' ଭିତରେ କିଛି ଅର୍ଥ ଥିବ।'' ଏପରି ଗୋଟିଏ ବିପଦ କଟିଗଲା ଦେଖି ବିଶ୍ୱାସରାୟ ରାଜା ଓ ରାଜକନ୍ୟାଙ୍କୁ ନେଇ ନଅରକୁ ଚାଲିଗଲେ। ସେହି ଦିନହିଁ ରାଜାଙ୍କର ବିବାହ ପାଇଁ ଆୟୋଜନ ହୋଇଗଲା। ରାଜା ବରବେଶ ହେବା ପାଇଁ ନୂଆ ପୋଷାକ ଆସି ଥୁଆହୋଇଗଲା। ଏତରେ

ସେ ପୋଷାକ ବହୁ ମୂଲ୍ୟ ପାଟ-ପୀତାମ୍ବର ପରି ଝଲସୁଥାଏ। କିନ୍ତୁ ରାଜା ସେ ନୂଆ ପୋଷାକ ପିନ୍ଧିବାକୁ ଯାଉଛନ୍ତି, ପଛରୁ ଜନ୍ ବିଶ୍ୱାସରାୟ ପଶିଆସିଲେ ଏବଂ କ୍ଷଣକ ଭିତରେ ସେ ପୋଷାକପତ୍ର ଟେକିନେଇ ନିଆଁରେ ମାଡ଼ିଦେଲେ। ପୋଷାକଗୁଡ଼ାକ ବାଣ ଫୁଟିଲା ପରି ଶବ୍ଦ କରି ବିଜୁଳି ବେଗରେ ଜଳିଗଲା। ବିରୋଧୀ ଲୋକେ ଏ କାର୍ଯ୍ୟର ନିନ୍ଦା କଲେ। କିନ୍ତୁ ରାଜା କହିଲେ, "ଦାଦାଙ୍କ ପରି ବିଶ୍ୱାସୀ ଲୋକ ମୋର ଆଉ କେହି ନାହାନ୍ତି। ସେ କିଛି ଅମଙ୍ଗଳ ସୂଚନା ପାଇ ଏ କାମ କରିଛନ୍ତି। ତାଙ୍କୁ କେହି କିଛି କହନି।"

ଯାହା ହେଉ, ଦ୍ୱିତୀୟ ବିପଦଟା ଏପରି କଟିଗଲା। ସେହି ଦିନ ସନ୍ଧ୍ୟାବେଳ କଥା। ବହୁ ବନ୍ଧୁବାନ୍ଧବ ଜମାହୋଇଥାନ୍ତି। ପୁଅ-ଝିଅଙ୍କ ଭିତରେ ନାଚ ଆରମ୍ଭ ହୋଇଗଲା। ରାଜା ମଧ୍ୟ ସୁବର୍ଣ୍ଣପୁର ରାଜକନ୍ୟାଙ୍କ ହାତ ଧରି ତାଙ୍କୁ ନାଚକୁ ଡାକିଲେ। ବିଶ୍ୱାସରାୟ ସେପାଖରେ ଜଗି ବସିଥାନ୍ତି। ରାଜକନ୍ୟା ଗୋଟିଏ ଘେର ବୁଲିସାରି ଦ୍ୱିତୀୟ ଘେର ବୁଲିବାକୁ ଯାଉଛନ୍ତି— ହଠାତ୍ କ'ଣ ହେଲା କେଜାଣି, ସେ ଘିଡ଼୍ଘାଡ଼୍ ହୋଇ ତଳେ ପଡ଼ିଗଲେ। 'କଣ ହେଲା, କଣ ହେଲା' ବୋଲି ସମସ୍ତେ ସେଠାକୁ ଦୌଡ଼ିଆସିଲେ; କିନ୍ତୁ ବିଶ୍ୱାସରାୟ ସମସ୍ତଙ୍କୁ ଠେଲିପେଲି ସେ ଭିତରେ ପଶିଗଲେ ଏବଂ କ୍ଷଣକ ଭିତରେ ରାଜକନ୍ୟାଙ୍କୁ ଟେକି ନେଇ ସେ ପାଖରେ ପଡ଼ିଥିବା ଗୋଟିଏ ପଲଙ୍କରେ ଶୁଆଇଦେଲେ। ସଙ୍ଗେ ସଙ୍ଗେ ଛାତିରୁ ଲୁଗାପଟା ଟାଣିପକାଇ ରାଜକନ୍ୟାଙ୍କର ଡାହାଣ ସ୍ତନଟିକୁ କାମୁଡ଼ି ସେଥିରୁ ତିନିଟୋପା ରକ୍ତ ଶୋଷିନେଲେ। ଲୋକେ ଛିଃ, ଛିଃ କହି ନିନ୍ଦା କରୁଥାନ୍ତି; ବିଶ୍ୱାସରାୟ ଥୁ-ଥୁ କରି ରକ୍ତଗୁଡ଼ାକ ତଳେ ପକାଇ ଦେଲେ। କିଛି ସମୟ ଭିତରେ ରାଜକୁମାରୀ ହସହସ ମୁହଁରେ ଉଠିପଡ଼ି 'କାହିଁକି ଏତେ ଲୋକ ଜମାହୋଇଛନ୍ତି' ବୋଲି ପଚାରିବାକୁ ଲାଗିଲେ। ରାଜକନ୍ୟା ଏପରି ସୁସ୍ଥ ହୋଇ ବସିବାରୁ ରାଜା ଖୁସୀ ହୋଇଗଲେ ସତ; କିନ୍ତୁ ବିଶ୍ୱାସରାୟଙ୍କର ଏ କାମଟା ସହିପାରିଲେ ନାହିଁ। ସେ ସଙ୍ଗେ ସଙ୍ଗେ ବିଶ୍ୱାସରାୟଙ୍କୁ ବନ୍ଦି କରାଇ ଜେଲଖାନାକୁ ପଠାଇଦେଲେ।

ରାତିରେ ବାହାଘର କାମ ଶେଷ ହୋଇଗଲା। ସକାଳୁ ସକାଳୁ ଦରବାର ବସି ବିଶ୍ୱାସରାୟଙ୍କର ବିଚାର ଆରମ୍ଭ ହେଲା। ନିଜେ ରାଜା ଯେଉଁଠି ବନ୍ଦି କରାଇଛନ୍ତି; ସେଠାରେ ଆଉ ବିଚାର କଣ? ଘଣ୍ଟାକ ଭିତରେ ରାୟ ଦେଇଦେଲେ ଯେ, ସେହି ଦିନ ସର୍ବସମକ୍ଷରେ ଜନ୍ ବିଶ୍ୱାସରାୟଙ୍କୁ ଫାଶୀ ଦିଆଯିବ। ଟାହୁଁ ଟାହୁଁ ଫାଶୀ ପଡ଼ିଆରେ ଲୋକ ଜମାହୋଇଗଲେ। ରାଜରାଜୁଡ଼ା ବନ୍ଧୁବାନ୍ଧବମାନେ ଯେ ଯାହା ଆସନରେ ଯାଇ ବସିଗଲେ। ସିପାହିମାନେ ବନ୍ଦି ବିଶ୍ୱାସରାୟଙ୍କୁ ଆଣି ଫାଶୀମଞ୍ଚ ଉପରେ ଠିଆ କରାଇ ଦେଲେ। ଯିମିତି ଫାଶୀ ଦେବା ବେଳ ହୋଇଗଲା, ବିଶ୍ୱାସରାୟ ଦୁଇହାତ ଯୋଡ଼ି ଜଣାଇଲେ, "ମଣିମା, ଫାଶୀରେ

ଝୁଲିବା ପୂର୍ବରୁ ଆସାମୀକୁ ତା ମନକଥା କହିବାକୁ ଟିକିଏ ସୁଯୋଗ ଦିଆଯାଏ; ମତେ ଟିକିଏ ସେହି ସୁଯୋଗ ମିଳୁ।''

ରାଜା ତ ରାଗରେ ପାଚିଯାଇଥାନ୍ତି, ମୁଣ୍ଡ ହଲାଇ 'ହଁ' କରିଦେଲେ। ସଙ୍ଗେ ସଙ୍ଗେ ବିଶ୍ୱାସରାୟ କହିଲେ, ''ମତେ ଲୋକେ ବିଶ୍ୱାସଘାତକ ବୋଲି ନ ଘେନନ୍ତୁ– ଏଇଥି ପାଇଁ ମୁଁ ଦି'ପଦ କହିଦେଉଛି। ମୁଁ କାହିଁକି ପକ୍ଷିରାଜ ଘୋଡ଼ାକୁ ମାରିଲି, ରାଜାଙ୍କ ବରବେଶ ପାଇଁ ଆସିଥିବା ପୋଷାକ ପୋଡ଼ିଦେଲି ଓ ଶେଷରେ ନୂଆ ରାଣୀଙ୍କର ସ୍ତନ କାମୁଡ଼ି ରକ୍ତ ବାହାର କଲି– ସେ କଥା ଶୁଣନ୍ତୁ। ତା'ପରେ ଆପଣମାନେ ନିଜ ମତ ଦେବେ...।'' ସେ ନିଜ କଲା କର୍ମର ସବୁ କଥା କହିଦେଇଛନ୍ତି କି ନାହିଁ, ତଳକୁ ଓଲଟି ପଡ଼ିଲେ। ରାଜା 'ଦାଦା' କହି ସେ ପାଖକୁ ଦୌଡ଼ିଗଲା ବେଳେ ଆଉ ଥାଏନା, ଜନ୍ ବିଶ୍ୱାସରାୟ ସେତେବେଳକୁ କଳା ମୁଗୁନି ପଥର ପାଲଟିଗଲେଣି।

ଲୋକେ ଫାଶୀ କଣ ଦେଖିବେ, ତାଙ୍କ ଭଳି ବିଶ୍ୱାସୀ ଲୋକର ଏହିପରି ଦଶା ହେଲା ଦେଖି କେହି ଜଣେ ନ କାନ୍ଦି ରହିପାରିଲେ ନାହିଁ। ମଣିଷ କାନ୍ଦିଲେ କଣ ହେବ; ପଥର ଆଉ ମଣିଷ ପାଲଟିଲା ନାହିଁ। ରାଜା ବିଶ୍ୱାସରାୟଙ୍କର ସେହି ପଥର ପ୍ରତିମାଟି ଆଣି ନଅର ଭିତରେ ରଖି ପୂଜା କଲେ।

ଏହିପରି କିଛି କାଳ କଟିଗଲା। ରାଜା ଓ ରାଣୀ ପ୍ରତିଦିନ ଯାଇ ସେ ପ୍ରତିମା ପାଦରେ ଫୁଲ ଦେଇ କ୍ଷମା ମାଗୁଥାନ୍ତି। ଏ ଭିତରେ ରାଣୀ ଦୁଇଟି ଯାଆଁଳା ପୁଅ ଜନ୍ମ କଲେ। ବଡ଼ ସୁନ୍ଦର ହୋଇଥାନ୍ତି ସେ ପିଲା ଦୁଇଟି। ରାଜା ପ୍ରତିଦିନ ସେ ପିଲା ଦୁଇଟିଙ୍କୁ ଆଣି ଜନ୍ ବିଶ୍ୱାସରାୟଙ୍କ ପାଖରେ ଖେଳାନ୍ତି; କହନ୍ତି, ''ଦାଦା, ଏ ଦୁଇଟିଙ୍କୁ ଆଶୀର୍ବାଦ କର। ତୁମେ ଥାଆନ୍ତ କି, ଏ ଦୁଇଟା ଭଲ ମଣିଷ ହୁଅନ୍ତେ।''

ଦିନେ ରାଜା ଦୁଇ ପୁଅଙ୍କୁ ଧରି ସେଠାରେ ଖେଳାଉଛନ୍ତି; ରାଣୀ ଗିର୍ଜାକୁ ଯାଇଥାନ୍ତି। ହଠାତ୍ ଜନ୍ ବିଶ୍ୱାସରାୟଙ୍କ ପଥର ପ୍ରତିମା କଥା କହିଲା– ''ରାଜା, ତୁମେ ମତେ ଝୁରିହେଉଛ ସତ, କିନ୍ତୁ ଯଦି ତୁମର ସବୁଠାରୁ ପ୍ରିୟ ବସ୍ତୁକୁ ମତେ ଦେଇ ପାରିବ, ତେବେ ଯାଇ ମୁଁ ପୁଣି ମଣିଷ ପାଲଟି ତୁମର ହେବି; ନଚେତ୍ ନୁହେଁ।''

ଏ କଥା ଶୁଣି ରାଜା ତଟସ୍ଥ ହୋଇଗଲେ। କହିଲେ, ''ମୁଁ ଶପଥ କରି କହୁଛି, ତୁମ ପାଇଁ ମୁଁ ମୋର ସବୁ କିଛି ଦେଇଦେବି– କଣ ଲୋଡ଼ା, କୁହ?''

ପଥର ପ୍ରତିମା କହିଲା, ''ତୁମର ଏ ଯେଉଁ ଦୁଇ ପୁଅ ଖେଳୁଛନ୍ତି, ତାଙ୍କୁ ହାଣି ଯଦି ମୋ ଉପରେ ଏମାନଙ୍କର ରକ୍ତ ଛିଞ୍ଚିଦେବ, ତେବେ ମୁଁ ମଣିଷ ହୋଇଯିବି।''

ରାଜା ପ୍ରଥମେ ଥଙ୍ଗଥଙ୍ଗ ହେଉଥିଲେ; କିନ୍ତୁ ଦେଖିଲେ, ଯେ ତାଙ୍କ ପାଇଁ ପ୍ରାଣ ଦେଇଦେଲା, ତା ପାଇଁ ପୁଅ ଦେବାକୁ ପଛାଇବା ଉଚିତ ନୁହେଁ। ତେଣୁ ସେ ସଙ୍ଗେ ସଙ୍ଗେ ଖଣ୍ଡା ଟେକି ଦୁଇ ପୁଅଙ୍କୁ ହାଣିଦେଲେ ଏବଂ ପଥର ପ୍ରତିମା ଉପରେ ସେମାନଙ୍କର ରକ୍ତ ଛିଞ୍ଚିଦେଲେ। ଆଖିପଲକ ଭିତରେ ପଥର ପ୍ରତିମା ମଣିଷ ହୋଇଗଲା ଏବଂ ଜନ୍ ବିଶ୍ୱାସରାୟ ରାଜାଙ୍କୁ ଆଶୀର୍ବାଦ କରି କହିଲେ, ‘‘ରାଜା, ତୁମେ ସତ୍ୟ ରକ୍ଷା କଲ। ମୁଁ ସେଥିରେ ବଡ଼ ଖୁସୀ ହେଲି। ତୁମେ କେତେ ତ୍ୟାଗ କରିପାରୁଛ, ମୁଁ କେବଳ ତାହାର ପରୀକ୍ଷା କରୁଥିଲି। ତୁମ ପୁଅଙ୍କୁ ମାରିବା ମୋର ଉଦ୍ଦେଶ୍ୟ ନୁହେଁ; ହେଇଟି, ସେମାନେ ଉଠି ବସୁଛନ୍ତି ଦେଖ।’’ ଏପରି କହି ସେ ଦୁଇ ପୁଅଙ୍କର ମୁଣ୍ଡ ଗଣ୍ଡି ଯୋଡ଼ି ତା ଉପରେ ହାତ ବୁଲାଇ ଆଣିଲେ। ସଙ୍ଗେ ସଙ୍ଗେ ଦୁଇ ପୁଅ ଉଠି ଡେଇଁପଡ଼ିଲେ। ରାଜାଙ୍କ ଆଖିରୁ ଆନନ୍ଦରେ ଲୁହ ଝରିପଡ଼ିଲା। ଜନ୍ ବିଶ୍ୱାସରାୟଙ୍କର ପ୍ରଶଂସା କରିବାକୁ ସେ ଭାଷା ପାଇଲେ ନାହିଁ। ଏତିକିବେଳେ ଶୁଣାଗଲା ରାଣୀ ଗିର୍ଜାରୁ ଫେରି ସେଠାକୁ ଆସୁଛନ୍ତି। ରାଜା ସଙ୍ଗେ ସଙ୍ଗେ ଜନ୍ ବିଶ୍ୱାସରାୟ ଓ ନିଜ ଦୁଇ ପୁଅଙ୍କୁ ଗୋଟିଏ ଆଲମାରି ପଛପଟେ ଲୁଚାଇ ଦେଇ ରାଣୀଙ୍କ ପାଖକୁ ଚାଲିଆସିଲେ। ପଚାରିଲେ, ‘‘ରାଣୀ, ତୁମେ ଗିର୍ଜାକୁ ଯାଇ କଣ ପ୍ରାର୍ଥନା କରୁଥିଲ ?’’

ରାଣୀ କହିଲେ, ‘‘ମୁଁ ପ୍ରଭୁଙ୍କୁ ପ୍ରାର୍ଥନା କରୁଥିଲି, ପ୍ରଭୁ ଆମକୁ ଜନ୍ ବିଶ୍ୱାସରାୟଙ୍କୁ ଫେରାଇଦିଅ। ଆମେ ତାଙ୍କ ସେବା କରି ଋଣ ଶୁଝିବୁ। ସତେ ମଣିମା, ପ୍ରଭୁ କଣ ଆମ ପ୍ରାର୍ଥନା ଶୁଣିବେ ନାହିଁ ?’’

ରାଜା କହିଲେ, ‘‘ଶୁଣିବେ ରାଣି! ଆମେ ଯଦି ଆମର ଦୁଇ ପୁଅଙ୍କୁ ମାରି ସେମାନଙ୍କର ରକ୍ତରେ ବିଶ୍ୱାସରାୟଙ୍କ ପଥର ପ୍ରତିମାକୁ ଧୋଇପାରିବା, ତେବେ ସେ ପୁଣି ଥରେ ମଣିଷ ହୋଇଯିବେ।’’

ରାଣୀଙ୍କ ଆଖିରୁ ଲୁହ ଝରିପଡ଼ିଲା। ଟିକିଏ ଚୁପ୍ ରହି ସେ କହିଲେ, ‘‘ଯେଉଁ ଲୋକ ଆମର ମଙ୍ଗଳ ପାଇଁ ନିଜ ପ୍ରାଣ ଦେଇପାରିଲା, ତାଙ୍କ ପାଇଁ ପୁଅ ଦେବାକୁ ହେଲେ ମୁଁ ପଛାଇବି କାହିଁକି ?’’

ରାଜା କହିଲେ, ‘‘ସାବାସ୍! ତୁମକୁ ରାଣୀରୂପେ ପାଇ ମୁଁ ଧନ୍ୟ ହୋଇଛି। ଆସ, ଦେଖିବ।’’ ଏପରି କହି ସେ ରାଣୀଙ୍କୁ ନେଇ ଆଲମାରି ପଛ ଦେଖାଇଦେଲେ। ଆଲମାରି ପଛରୁ ଦୁଇ ପୁଅଙ୍କ ହାତ ଧରି ଜନ୍ ବିଶ୍ୱାସରାୟ ବାହାରି ପଡ଼ିଲେ। ଏଥର ଦେଖ, ସେମାନଙ୍କର ଖୁସୀ! ସବୁ ଶୁଣି ରାଣୀ ରାଜାଙ୍କୁ ଧନ୍ୟ ଧନ୍ୟ କହିଲେ। ଅନେକ ଅନେକ ଦିନଯାଏ ସେମାନେ ଆନନ୍ଦରେ ପ୍ରଜା ପାଳନ କରି ରାଜୁତି କଲେ।

—

# ତୁଷାର କୁମାରୀ

ଅସଲ ଶୀତଦିନ ହୋଇଥାଏ। ଥୋପା ଥୋପା ହୋଇ ତୁଷାର ଝରିପଡୁଥାଏ। ଯେଣେ ଚାହିଁବ, ତେଣେ ଖାଲି ଧଳା ଦେଖାଯାଉଥାଏ— ସତେ ଯେପରି ନୂଆ ତୁଳାଗୁଡ଼ାକ କୁଢ଼େଇ ହୋଇ ପଡୁଛି। ଏତିକିବେଳେ ଜଣ ହୋଇଥାଏ ନା, ସେ ଦେଶର ରାଣୀ ଝରକା ପାଖରେ ବସି ରୁମାଲରେ ଫୁଲ ପକାଉଥାନ୍ତି। ରଜାଘରେ ଏବେ କେଉଁ କଥାର ଅବା ଅଭାବ! ଝରକା ବି କଳା ଶିଶୁକାଠରେ ତିଆରି ହୋଇଥାଏ। ଝଡ଼ି ଝଡ଼ି ପଡୁଥିବା ତୁଷାରକୁ ଚାହିଁ ଚାହିଁ ରୁମାଲରେ ଫୁଲ ବୁଣୁ ବୁଣୁ ଛୁଞ୍ଚିଟା ତାଙ୍କ ଆଙ୍ଗୁଠିରେ ଫୋଡ଼ିହୋଇଗଲା। ଟପଟପ ହୋଇ ଦି' ବୁନ୍ଦା ରକ୍ତ ଝରିପଡ଼ିଲା। ତୁଷାର ଉପରେ ରକ୍ତବୁନ୍ଦାଗୁଡ଼ିକ ପଡୁ ପଡୁ ଖେଳେଇ ହୋଇଗଲା। ଧଳା ତୁଷାରରେ ଲାଲ ରକ୍ତ ମିଶି ସୁନ୍ଦର ଗୋଲାପି ରଙ୍ଗ ହୋଇଗଲା। ସେ ରାଣୀ ତ ବାଞ୍ଝ ହୋଇ ରହିଥାନ୍ତି। ଏହା ଦେଖି ରାଣୀଙ୍କ ମନ ହେଲା— ଯଦି ତାଙ୍କର ତୁଷାର ପରି ଗୋରା ତକତକ ଦେହ, ରକ୍ତ ପରି ଲାଲ ଟୁକୁଟୁକୁ ଓଠ ପାଟି ଓ ଶିଶୁକାଠ ପରି କଳା ମଚ୍‌ମଚ୍ ବାଳ ଥିବା ଝିଅଟିଏ ଜନ୍ମ ହୁଅନ୍ତା, ତେବେ ସେ ଜୀବନରେ ସବୁ ପାଇଗଲେ ବୋଲି ଜାଣନ୍ତେ।

ମଣିଷ ଭାବନାକୁ ଦଇବ ଘଟନା। ସତକୁ ସତ, ଠିକ୍ ବର୍ଷକ ପରେ ରାଣୀଙ୍କର ଝିଅଟିଏ ଜନ୍ମ ହେଲା। ଜଣ ଆଉ କହିବି, ସେ ଝିଅଟି ସତରେ କଣ୍ଢେଇଟିଏ ପରି ହୋଇଥାଏ। ତାର ତୁଷାର ପରି ଗୋରା ତକତକ ଦେହ, ତାର ରକ୍ତ ପରି ଲାଲ ଟୁକୁଟୁକୁ ଓଠ, ପାଟି, ପାପୁଲି, ଆଙ୍ଗୁଠି ଆଉ ତାର ଶିଶୁକାଠ ପରି କଳା ମଚ୍‌ମଚ୍ ମୁଣ୍ଡବାଳ ଓ ଆଖିପତା ଦେଖି ରାଣୀଙ୍କ ଆନନ୍ଦ କହିଲେ ନ ସରେ। କହିଲେ, ସତରେ ପ୍ରଭୁ ତାଙ୍କର ମନକଥା ବୁଝିଲେ। ଝିଅଟିକୁ ସେ ନାଆଁ ଦେଲେ ତୁଷାର କୁମାରୀ। କିନ୍ତୁ ଏଡ଼େ ସୁନ୍ଦର ଝିଅ ସିନା ଜନ୍ମ ହେଲା; ଝିଅ ଜନ୍ମ ହେବାର କିଛି ଦିନ ଯାଇଛି କି ନାହିଁ, ରାଣୀ ହଠାତ୍ ମରିଗଲେ।

ଘରେ ମାଆ ନ ଥିଲେ ଛୁଆର ଦେଖାଶୁଣା କିଏ କରିବ? ତେଣୁ ରାଜା ଆଉ ଥରେ ବାହା ହୋଇପଡ଼ିଲେ। ଏଥର ନଅରକୁ ଯେଉଁ ନୂଆ ରାଣୀ ଆସିଲା, ସେ ଦେଖିବାକୁ ଭାରି ସୁନ୍ଦରୀ, ଆଉ ସୁନ୍ଦରୀ ବୋଲି ତାର ଭାରି ଗର୍ବ। ସେ ଭାବୁଥିଲା, ଜଗତଟା ଯାକରେ ତା ପରି ସୁନ୍ଦରୀ ଆଉ କେହି ନାହିଁ। ତହିଁକି ସେ ଗୁଣିଗାରୁଡ଼ି ମଧ୍ୟ କିଛି କିଛି ଜାଣିଥାଏ। ତାର ଗୋଟିଏ କୁହୁକ ଦର୍ପଣ ଥାଏ ଯେ, ସେଇଟି ତା ସହିତ କଥା କହେ। ସେ ବେଳେବେଳେ ଦର୍ପଣକୁ ପଚାରେ—

"ମୋଠାରୁ ସୁନ୍ଦରୀ ଆଉ ଜଗତେ
କେ ଅଛି, ଦର୍ପଣ କହ ରେ ମୋତେ ?"

ଦର୍ପଣ ଉତ୍ତର ଦିଏ – "ରାଣୀମା' ଶୁଣ, ଜଗତେ କେହି
ତୁମଠାରୁ ବଳି ସୁନ୍ଦରୀ ନାହିଁ।"

ଏତକ ଶୁଣିଦେଲେ ରାଣୀ ଆହୁରି ଗର୍ବରେ ଫୁଲିଉଠେ। ଇମିତି ଛଅ-ସାତ ବର୍ଷ ଚାଲିଗଲା। ଏଣେ ତୁଷାର କୁମାରୀ ଚନ୍ଦ୍ରକଳା ପରି ବଢ଼ିଚାଲିଥାଏ। ବୟସ ବଢ଼ିବା ସଙ୍ଗେ ସଙ୍ଗେ ତାର ରୂପ ତେଜ ବି ବଢ଼ିଚାଲିଥାଏ। ଦିନେ ମୁଣ୍ଡ କୁଣ୍ଡାଉ କୁଣ୍ଡାଉ ଆପଣା ରୂପରେ ଆପେ ମୋହିହୋଇ ରାଣୀ ତା କୁହୁକ ଦର୍ପଣକୁ ପଚାରିଲା। "ମୋଠାରୁ ସୁନ୍ଦରୀ ଆଉ ଜଗତେ
କେ ଅଛି, ଦର୍ପଣ କହିଲୁ ସତେ ?"

ଦର୍ପଣ ଥିଲା ଥିଲା, କହିଦେଲା –

"ରାଣୀମା' ଶୁଣ ରଖୁଛି କହି / ତୁମ ପରି ତୁମେ ସୁନ୍ଦରମୁହାଁ;
(ହେଲେ) ତୁମର ସେ ଯେଉଁ ସାବତଝିଅ / ତାହାପରି ତୁମେ ସୁନ୍ଦରୀନୁହଁ,
ତୁଷାର କୁମାରୀ ଜାଣ ଏକ୍ଷଣି / ସାରା ଜଗତରେ ସୁନ୍ଦରମଣି।"

ଏତକ ଶୁଣି ଦେଉ ଦେଉ ରାଣୀ ମନରେ ଗୋଟିଏ ଦକା ପଶିଗଲା। ସାରା ଜଗତର ସୁନ୍ଦରମଣି ବୋଲି ତାର ଯେଉଁ ନାଆଁ ଥିଲା, ସେ ନାଆଁ ତା'ହେଲେ ଆଉ ରହିବ ନାହିଁ। ଏପରି ଭାବୁ ଭାବୁ ତୁଷାର କୁମାରୀକୁ ସେ ନିଜର ଝିଅ ବୋଲି ନ ଭାବି, ଶତ୍ରୁ ବୋଲି ଭାବିବସିଲା। ତା' ଛାଇ ପଡ଼ିଲେ, ଯା ନାହିଁ ଡେଇଁଲା। ତା' ସୁନ୍ଦର ମୁହଁ ଦେଖିଲେ ଲୋକେ ଦଣ୍ଡେ ଚାହିଁରହନ୍ତି, କିନ୍ତୁ ସାବତମାଆ ରାଣୀ ତା ମୁହଁ ଦେଖିଲେ ଈର୍ଷାରେ ଜଳିପୋଡ଼ି ଗଲା। ଶେଷକୁ ସେ ଭାବିଲା, ଏଇଟାକୁ ମାରି ଯା କଲିଜା ନ ଖାଇବାଯାଏ ମୋର ଶାନ୍ତି ନାହିଁ। ଏପରି ଭାବି ସେ ଜଣେ ବାଣୁଆ ଡକାଇ ତା ସହିତ ସଲାସୁତ୍ର କରି ତୁଷାର କୁମାରୀକୁ ମରାଇବା ଲାଗି ଗୋଟିଏ ଫାନ୍ଦ ପାତିଲା। ଝିଅକୁ ବଣ ବୁଲେଇ ଦେଖେଇବ କହି ବାଣୁଆ ତାକୁ ବଣକୁ ନେଇଗଲା। ଗହନ ବନସ୍ତ ଭିତରେ କହିଲା, "ତୁଷାର କୁମାରୀ; ମୁଁ ରାଣୀଙ୍କ ଚାକର। ତାଙ୍କ ବୋଲ ନ କଲେ ମୋ ଭାତିଆ ବନ୍ଦ। ତାଙ୍କରି ଆଦେଶ – ମୁଁ ତୁମକୁ ମାରି ତୁମର କଲିଜା ନେଇଗଲେ ସେ ଖାଇବେ। ଆସ, ମୁଁ ତୁମକୁ ମାରିବି।"

ଏପରି ଅକାଳ ଚଢ଼କ ପଡ଼ିଲା ଦେଖି ତୁଷାର କୁମାରୀ ଛାନିଆ। ହେଲେ ବି ସେ ହାତ ଯୋଡ଼ି ବାଣୁଆକୁ କହିଲା; "ବାଣୁଆ ଭାଇ, ମୁଁ ନିର୍ଦ୍ଦୋଷ, ମୋତେ ମାରନା। ପେଟ ପୋଷିବାକୁ ଏପରି ପାପ କରନା" – କହୁ କହୁ ସେ ଭୋ-ଭୋ ହୋଇ କାନ୍ଦିପକାଇଲା। ତାର ସେ ରୂପ ଦେଖି, ସେ କାନ୍ଦ

ଶୁଣି ବାଣୁଆ ମନରେ ଦୟା ହେଲା। ସେ କହିଲା, "ହଉ ମା; ମୁଁ ତୁମକୁ ଛାଡ଼ିଦେଉଛି। ବାଗ୍‌ହାଟିଏ ମାରି ତା' କଲିଜା ନେଇ ରାଣୀକୁ ଦେଇଦେବି। କହିବି, ଇଏ ତୁଷାର କୁମାରୀ କଲିଜା। କିନ୍ତୁ ତୁମେ ଆଉ ଆମ ରାଜ୍ୟ ମାଡ଼ନି। ତୁମକୁ ଦେଖିଲେ ତୁମ ପ୍ରାଣ ଯିବ; ମୋ ପ୍ରାଣ ବି ଯିବ। ବଣରେ ବଣରେ ଯେଣେ ପାରିବ, ତେଣେ ପଳାଅ।"

ତୁଷାର କୁମାରୀ ପ୍ରାଣ ଘେନି ବଣ ପର୍ବତ ଚଢ଼ି ପଳାଇଗଲା। ବଣ ଭିତରେ ବାଟ ନା ଘାଟ, କଣ ଅଛି! ଯାଉ ଯାଉ କେତେ ବଣଜନ୍ତୁ ଭେଟ ହେଉଥାନ୍ତି। ଗଧିଆ, ବିଲୁଆ, ହେଟା ପଣ ପଣ ହୋଇ ବୁଲୁଥା'ନ୍ତି; କିନ୍ତୁ କେହି ତାର କ୍ଷତି କଲେ ନାହିଁ। ଦେହରେ ସିନା ଘଷି ହୋଇ ପଳାଉଥାନ୍ତି; ଭୟ ଦେଖାଉ ନଥାନ୍ତି। ଇମିତି ଯାଉ ଯାଉ ଦିନ ଯାଇ ରାତି ଆସିଲା। ସେତେବେଳକୁ ତୁଷାର କୁମାରୀ ଛଅ ପର୍ବତ ଛଅ ବଣ ପାର ହୋଇ ସପ୍ତମ ପର୍ବତ ଚଢୁଥାଏ। ସପ୍ତମ ପର୍ବତ ପାର ହେଲା ବେଳକୁ, ଦେଖିଲା, ବେଳ ବୁଡ଼ିଗଲା; ଆଉ ଆଗକୁ ଯାଇ ହେବ ନାହିଁ। କେଉଁଠି ରାତିଟା କଟାଇବ ବୋଲି ସେ ଏଣେତେଣେ ଚାହୁଁଛି– ଦେଖିଲା, ପର୍ବତ ଧାରରେ ଗୋଟିଏ ଛୋଟ କୁଡ଼ିଆ ଘର ଅଛି। ସେ ଯାଇ ଦେଖେ ତ ଦୁଆର ଶିକୁଳି ଲାଗିଛି, କିନ୍ତୁ ତାଲା ପଡ଼ିନାହିଁ। ସେ ଦୁଆର ଖୋଲି ଘର ଭିତରେ ପଶିଲା। ଦେଖିଲା, ଭିତରେ ଶୋଇବା ଘର, ଖାଇବା ଘର, ରୋଷେଇ ଘର ହୋଇ ତିନି ବଖରା ଘର ଅଛି। ଖାଇବା ଘରେ ସାତଟି ଟେବୁଲ ଚଉକି ପଡ଼ିଛି। ଟେବୁଲମାନଙ୍କରେ ଥାଳିରେ ପିଠାପଣା ହୋଇ ଖାଇବା ଜିନିଷ ସବୁ ବଢ଼ାହୋଇଛି। ଏ ତ ଦିନ ତମାମ ଚାଲି ଚାଲି ଥକ୍‌କା ହୋଇଯାଇଥାଏ। ଏଡ଼େ ସୁନ୍ଦର ଖାଇବା ଜିନିଷ ଦେଖି ଲୋଭ ସମ୍ଭାଳି ପାରିଲା ନାହିଁ। କିନ୍ତୁ ଭାବିଲା, କାହା ପାଇଁ ବଢ଼ା ହୋଇଛି କେଜାଣି, ମୁଁ ଯଦି ସବୁ ଖାଇଦେବି, ତେବେ ସେ ଲୋକ ଭୋକ-ଉପାସରେ ରହିବେ। ଯାଉଛି ସବୁଥିରୁ ଟିକିଏ ଟିକିଏ ଖାଇଦେବି ଯେ ମୋ ଭୋକ ଶୋଷ ମେଣ୍ଟିବ; ଯାହାଙ୍କ ପାଇଁ ବଢ଼ା ହୋଇଛି ସେମାନଙ୍କ ଭୋକ ଶୋଷ ବି ମେଣ୍ଟିବ। ଏପରି ଭାବି ସେ ପ୍ରତି ଟେବୁଲ ପାଖରେ ବସି ସବୁଥିରୁ ଟିକିଏ ଟିକିଏ ଖାଇଦେଲା। କଥାରେ ଅଛି, ମାଗଣା ଘରେ ପାଞ୍ଚ ତିଅଣ। ଏଠୁ ସେଠୁ ଖାଇ ତୁଷାର କୁମାରୀର ପେଟ ପୂରିଗଲା। ଏଥର ଭାବିଲା, ଟିକିଏ ଶୋଇପଡ଼ିବ। ଶୋଇବା ଘରେ ସେପରି ସାତଟି ଖଟ ପଡ଼ିଥାଏ। କିନ୍ତୁ ସେ ଯେଉଁ ଖଟରେ ଯାଇ ଶୋଇଲା, ସେଇଟି ଛୋଟ; ଏତେ ଛୋଟ ଯେ ଶୋଇ ହେଲା ନାହିଁ। ଏପରି ପରଖୁ ପରଖୁ ଦେଖିଲା ସପ୍ତମ ଖଟଟି ଟିକିଏ ବଡ଼। ସେଇଥିରେ ଶୋଇପଡ଼ିଲା।

କଥା କଣ କି, ସେ କୁଡ଼ିଆଟି ହେଲା ସପ୍ତପର୍ବତର ସାତ ବାମନଙ୍କ ଘର। ସେ ସାତ ଭାଇ କେବେଠୁଁ ସେଠାରେ ରହିଆସୁଥିଲେ। ସେମାନେ ବଣ ପର୍ବତ ବୁଲି ବୁଲି ଘରକୁ ଫେରିବା ବେଳକୁ ରାତି। ଘରକୁ ଫେରୁ ଫେରୁ ସେମାନେ ଖାଇବାକୁ ବସିପଡ଼ିଲେ। ତୁଷାର କୁମାରୀ ତ ସବୁ ଚଉକିରେ ବସି ସବୁ ଥାଳିରୁ ଟିକିଏଟିକିଏ କରି ଖାଇ ଟେବୁଲ ଜିନା, ଥାଳି ଏସବୁ ଘୁଞ୍ଚାଘୁଞ୍ଚି କରିଦେଇଥାଏ ! ତେଣୁ ବାମନମାନେ ଖାଇ ବସୁ ବସୁ–

ପ୍ରଥମ ବାମନ କହିଲା, "ହେ, ମୋ ଚଉକିଟା କିଏ ଟାଣି ଦେଇଛି !" ଦ୍ୱିତୀୟ ବାମନ କହିଲା, "ହେ, ମୋ ଖାଇବା ଥାଳି କିଏ ଟାଣି ଦେଇଛି !" ତୃତୀୟ ବାମନ କହିଲା, "ହେ, ମୋ ରୁଟି କିଏ ସେ ଖଣ୍ଡିଆ କଲା ?" ଚତୁର୍ଥ ବାମନ କହିଲା, "ହେ, ଆଳୁ ତରକାରି କେ ଅଧା କଲା ?" ପଞ୍ଚମ ବାମନ କହିଲା, "ହେ, ମୋ ଚାମଚ କିଏ ସେ ତଳେ ଥୋଇଲା ?" ଷଷ୍ଠ ବାମନ କହିଲା, "ହେ, ମୋ ଛୁରି କଣ୍ଟା କିଏ ଧରି ଥିଲା ?" ସପ୍ତମ ବାମନ କହିଲା, "ହେ, କିଏ ସେ ଆସି (ମୋର) ଅଧେ ସରବତ ଦେଇଛି ଶୋଷି ?"

ଏପରି କୁହାକୁହି ହୋଇ ଖାଇପିଇ ସାରି ସାତଜଣଯାକ ଶୋଇବାକୁ ଚାଲିଗଲେ। କିନ୍ତୁ ଶୋଇବା ଘରେ ତ ତୁଷାର କୁମାରୀ ସବୁ ଖଟ ପରଖି ପରଖି ଯାଇ ଶେଷ ଖଟରେ ଶୋଇଛି; ତେଣୁ ନିଜ ନିଜ ଖଟ ପାଖରେ ପହଞ୍ଚି ବାମନମାନେ କିଏ ମୋ ଚାଦର ଟାଣିଛି, କିଏ ମୋ ତକିଆ ଘୁଞ୍ଚାଇଛି, କିଏ ମୋ କମ୍ବଳ ଖୋଲିଛି ବୋଲି ପାଟିକଲେ। ଶେଷ ବାମନ ତା' ଖଟ ପାଖରେ ପହଞ୍ଚି ଦେଖେ ତ, ତା ଖଟରେ ଏ ଝିଅ ଶୋଇଛି। ସେ ତ ରଜାଝିଅ, ଦିନଯାକ ବୁଲି ବୁଲି ହାଲିଆ ହୋଇ ଶୋଇଛି। ତା ନିଦ ଭାଙ୍ଗିଲା ନାହିଁ। ଏ ବାମନମାନେ ତା ରୂପ ଦେଖି କାବା ହୋଇଗଲେ। ଏଡ଼େ ସୁନ୍ଦର ଝିଅଟିଏ, ଏ ଘରକୁ ଆସିଲା କିପରି ! ଯାହାହେଉ, ତାକୁ ଆଉ ନିଦରୁ ଉଠାଇବା ଉଚିତ ନୁହେଁ। ତେଣୁ ସେମାନେ କୌଣସି ପ୍ରକାରେ ଶୋଇପଡ଼ିଲେ। ରାତି ପାହୁ ପାହୁ ସମସ୍ତଙ୍କର ନିଦ ଭାଙ୍ଗିଲା। ତୁଷାର କୁମାରୀ ବି ଉଠିଲା। ଏମାନେ ତାକୁ ତା ନାଆଁ ଗାଆଁ ପଚାରି ସେଠାକୁ କିପରି ଆସିଲା ବୋଲି ଜାଣିବାକୁ ଚାହିଁଲେ। ସେ ଠିକେ ଠିକେ ନିଜର ଦୁଃଖର କାହାଣୀ କହିଗଲା। ସବୁ ଶୁଣି ସାତ ବାମନ କହିଲେ, "ପଳାଇ ଆସିଛୁ, ଭଲ କରିଛୁ। ତୁ ଯଦି ଏଠି ଆମ ଘର ଖରକି ଶେଯପଟା ସଜାଇ ରାନ୍ଧିବାଢ଼ି ଆମ ପାଇଁ ଖାନାପିନା ତିଆରି କରିଦେବୁ ବୋଲି କହିବୁ, ତେବେ ଏଠି ରହ; ଆମର ଆପତ୍ତି ନାହିଁ।"

ତୁଷାର କୁମାରୀ କହିଲା, "ହଁ, ମୁଁ ତୁମର ସବୁ କରିବି। ମତେ ଏଠି ରହିବାକୁ ଦିଅ।"

ସାତ ବାମନ କହିଲେ, "ତୁ ଭଲ ଝିଅଟିଏ, ଆମେ ତତେ ନିଶ୍ଚୟ ରଖିବୁ। କିନ୍ତୁ ଗୋଟିଏ କଥା, ତୋର ସେ ଯେଉଁ ସାବତମାଆ, ସେ ଦିନେ ନା ଦିନେ ଜାଣିଯିବ ଯେ, ତୁ ଏଠି ରହିଛୁ। ତା'ପରେ ନିଶ୍ଚୟ ତତେ ମାରିଦେବା ଲାଗି ଏଠିକି ଆସିବ। ତେଣୁ ତତେ କହି ରଖୁଛୁ, ତୁ କେବେ କାହାକୁ ଆମ ଘରେ ପୂରାଇବୁ ନାହିଁ।"

ତୁଷାର କୁମାରୀ ହଁ ଭରିଲା। ସାତ ବାମନ ତାଙ୍କର ବୁଲିବାକୁ ବାହାରିଗଲେ। ସେହି ଦିନଠାରୁ ତୁଷାର କୁମାରୀ ସେ ଘରର ସବୁ କାମଦାମ କରି ସୁଖରେ ରହିଲା। ସେପଟେ କଣ ହୋଇଥାଏ ନା, ସେ ବାଣୁଆ ଗୋଟିଏ ବାରହା ମାରି ତା କଲିଜାଟା ନେଇ ରାଣୀଙ୍କୁ ଦେଇଦେଲା। କହିଲା, "ମଣିମା; ତୁଷାର କୁମାରୀକୁ ମାରି ତା କଲିଜାଟା ଆଣି ଦେଇଛି।" ସେ ରାଣୀ ତ ଡାହାଣୀ। ତା ମନରେ ଟିକେ ଦୁଃଖ ହେଲା ନାହିଁ। ରାନ୍ଧୁଣୀକୁ କହିଲା, "ଲୁଣ ମସଲା ଦେଇ ଏତକ ମୋ ପାଇଁ ରାନ୍ଧିଦେବ।" ରାନ୍ଧୁଣୀ ରାନ୍ଧିଦେଲା। ଡାହାଣୀ ରାଣୀ ତାକୁ ଖାଇ ମନେ ମନେ ଭାରି ଖୁସି ହୋଇଗଲା, ଯେ ତା କଣ୍ଟା ଗଲା। ଏପରି ଅନେକ ଦିନ ଚାଲିଗଲା। ସାତ ବାମନ ଘରେ ତୁଷାର କୁମାରୀ ପିଲାରୁ ବଡ଼ ହେଲା। ଏ ଭିତରେ ଦିନେ ରାଣୀ ନିଜ ପ୍ରଶଂସା ଶୁଣିବ ବୋଲି ତା କୁହୁକ ଦର୍ପଣକୁ ପଚାରିଲା – "ମୋଠାରୁ ସୁନ୍ଦରୀ ଆଉ ଜଗତେ

କେ ଅଛି, ଦର୍ପଣ କହ ରେ ମୋତେ।"

କୁହୁକ ଦର୍ପଣ କହିଲା – "ଶୁଣ ଗୋ ରାଣୀ, / ତୁମ ପରି ତୁମେ ସୁନ୍ଦରମଣି;
ହେଲେ, ତୁମର ସେ ଯେଉଁ ସାବତଝିଅ
ତା ପରି ତୁମେ ସୁନ୍ଦରୀ ନୁହଁ।"

ରାଣୀ କହିଲା, "ଆରେ, ସେ ତ ମଲାଣି, ତା କଥା କିଆଁ କହୁଛୁ?" ଦର୍ପଣ କହିଲା – "ସାତ ପରବତ ବଣ ସେପାରି / ସାତ ବାମନଙ୍କ କୁଡ଼ିଆଧରି,
ତୁଷାର କୁମାରୀ ବଞ୍ଚିରହିଛି / ସୁନ୍ଦରପଣରେ ସରିଯାଇଛି।"

ଏ କଥା ଶୁଣିଦେଲାକ୍ଷଣି ଦେଖ ସେ ରାଣୀର ରାଗ। କହିଲା, "ହାଁ, ଏଡ଼େ ବଡ଼େଇ! ମୋ ଆଖିରେ ଧୂଳି ଦେଇ ସେ ଯାଇ ସାତ ବାମନଙ୍କ କୁଡ଼ିଆରେ ବଞ୍ଚିଛି? କଳେ ବଳେ କୌଶଳେ ମୁଁ ତାକୁ ନିଶ୍ଚୟ ମାରିବି। ଏପରି ଭାବି ଦିନେ ସେ ନିଜ ବେଶ ବଦଳାଇ ନଅରରୁ ବାହାରି ପଡ଼ିଲା। ମୁଣ୍ଡରେ ବୋଝେ ରିବନ୍ ଫିତା, ଦର୍ପଣ, ପାନିଆ, ବାସନାତେଲ ଧରିଥାଏ। ଠିକ୍ ଫେରିବାଲା ବେଶ ଧରି ସେ ଯାଇ ସାତ ବାମନଙ୍କ କୁଡ଼ିଆ ପାଖରେ ପହଞ୍ଚିଗଲା। ସାତ ବାମନ ସେତେବେଳକୁ ଘରେ ନ ଥାନ୍ତି। ତୁଷାର କୁମାରୀକୁ ଏକାଟିଆ ଘରେ ବସି ବସି ବିରକ୍ତ ଲାଗୁଥାଏ। ବାହାରେ ସେ କପଟୀ ରାଣୀ ଡାକପକାଇଲା –

ମୁଣ୍ଡଫିତା, ରିବନ୍, ବାସନାତେଲ କିଏ ନବ ଆସ ଲୋ ଆସ। ବଢ଼ିଆ ବଢ଼ିଆ ଚିଜ ଆଣିଛି, ଶସ୍ତା ସୁନ୍ଦର ମଜବୁଦ୍ ଜିନିଷ — କିଏ ନେବ ଆସ ଲୋ ଆସ।''

ଏ କଅଁଳ-ହିତ ଡାକ ଶୁଣି ଏତେ ଦିନକେ ଫେରିବାଲୀ ଆସିଛି ବୋଲି ତୁଷାର କୁମାରୀ କବାଟ ଖୋଲି ଚାହିଁଲା। କପଟୀ ରାଣୀ କହିଲା, ''ଆହେ ଝିଅ, ତୁମ ମୁଣ୍ଡ ବଳୁରି ବସା ହୋଇ ଗଲାଣି, ବେଣୀଟିଏ ବାନ୍ଧୁନା। ଦେଖ, କି ସୁନ୍ଦର ସୁନ୍ଦର ରିବନ୍ ଫିତା ରଖିଛି; ଆସ, ମୁଁ ବେଣୀ ବାନ୍ଧିଦେବି, କି ସୁନ୍ଦର ଦେଖାଯିବ।''

ଏ କଅଁଳ କଥାରେ ତୁଷାର କୁମାରୀ ସାତ ବାମନଙ୍କର ସବୁ ବାରଣ ପାଶୋରି ଗଲା। ସେ ବାହାରକୁ କଣ ଆସିବ, ଏ କପଟୀ ରାଣୀକୁ ଘର୍ ଭିତରକୁ ନେଇ ବେଣୀ ବାନ୍ଧିଦେ ବୋଲି ମୁଣ୍ଡ ଦେଖେଇ ଦେଲା। ତା' ହାତରେ ଯା ଚୁଟି ପଡ଼ିଗଲା। ସେ କି ଆଉ ରଖେ; ବେଣୀ ପକାଉ ପକାଉ ବେକରେ ଗୁଡ଼ାଇ ଇମିତି କସିକି କାନ୍ଧିଦେଲା ଯେ ସେଥିରେ ତୁଷାର କୁମାରୀ ଦମ୍ ଅଟକି ମୁଣ୍ଡ ବୁଲେଇଦେଲା; ସେ ତଳେ ପଡ଼ିଗଲା। ସେତେବେଳକୁ ସଞ୍ଜ ହୋଇ ଆସୁଥାଏ। କାଳେ ସାତ ବାମନ ଆସିଯିବେ ବୋଲି କପଟୀ ରାଣୀ ସେଠାରୁ ପଳାଇଗଲା। ଭାବିଲା, ଅଚେତ ହୋଇଗଲାଣି; ଏଥର ମରିବ।

କିଛି ସମୟ ପରେ ସାତ ବାମନ ଆସି ଦେଖନ୍ତି ତ ଦୁଆର ଓଦାଣ୍ଡିଆ ମେଲା। ତୁଷାର କୁମାରୀ ଘର ଭିତରେ ଫାଁଗାଳି ପଡ଼ିଛି। 'କଣ ହେଲା, କଣ ହେଲା' ବୋଲି ସାତ ବାମନ ତା ଦେହମୁଣ୍ଡ ଅଣ୍ଡାଳି ପକାଇଲେ। ଉଠ ଉଠ ବୋଲି ଡାକିଲେ। କେଉଁଥିରେ କିଛି ହେଲା ନାହିଁ। ଶେଷକୁ ଦେଖିଲେ ମୁଣ୍ଡର ବେଣୀଟା ଖୁବ୍ କସି କରି ତୋଟିରେ ଗୁଡ଼ାହୋଇଛି। ସେମାନେ ସଙ୍ଗେ ସଙ୍ଗେ ସେଇଟି ଖୋଲିଦେଲେ। ତା'ପରେ ଟିକିଏ ଝଡ଼ାଫୁଙ୍କା କରିଦେବାରୁ ତୁଷାର କୁମାରୀ ଆଖି ଖୋଲି ଚାହିଁଲା। ଜୀବନ ଫେରି ଆସି ସେ ଯେତେବେଳେ ପୁଣି ଥରେ ଉଠି ବସିଲା, ସାତ ବାମନ ପଚାରିଲେ, ''କି ଲୋ, କଥା କଣ ? ବାହାର ଲୋକ କିଏ ଏଠିକି ଆସିଥିଲା କି ?''

ତୁଷାର କୁମାରୀ କହିଲା, ''ନା, ଆଉ କେହି ନୁହେଁ ତ, ଗୋଟିଏ ଫେରିବାଲୀ ଆସି ମୋ ମୁଣ୍ଡ ବାନ୍ଧି ଦେଉଥିଲା।'' ଏହା ଶୁଣି ବାମନମାନେ ଜାଣିଗଲେ ଯେ, ସେ ହେଉଛି ସେହି ଦୁଷ୍ଟା ରାଣୀ। ସେମାନେ ତୁଷାର କୁମାରୀକୁ ସାବଧାନ କରାଇଦେଲେ — ''ବୁଝିଲୁ, ତୋ ସାବତମାଆ ତୋ ଠାବ ଜାଣିଗଲାଣି। ସେହି ଆସିଥିଲା। ଏଥର ସାବଧାନ, ଆଉ କାହାରିକୁ ବିଶ୍ୱାସ କରି ଘରେ ପୂରାଇବୁନି; ନ ହେଲେ ସେ ରାଣୀ କେଉଁ ନାହିଁ କେଉଁ ଛଟକରେ ଆସି ତୋ ପ୍ରାଣ ନେଇଯିବ।''

ତୁଷାର କୁମାରୀ ସେହିଦିନଠାରୁ ସାବଧାନ ହୋଇଗଲା। କିନ୍ତୁ ଏପରି କିଛି

ଦିନ ଗଲା ପରେ ଦିନେ ରାଣୀ ନିଜ ପ୍ରଶଂସା ଶୁଣିବା ଲାଗି କୁହୁକ ଦର୍ପଣକୁ ପୁଣି ପଚ଼ାରିଲା– "କହ ଦରପଣ କହ ରେ ସତେ

ମୋଠାରୁ ସୁନ୍ଦରୀ କିଏ ଜଗତେ ?"

ଦର୍ପଣ କହିଲା– "ସାତ ପରବତ ବଣ ସେପାରି

ସାତ ବାମନଙ୍କ କୁଡ଼ିଆ ଧରି,

ରହିଅଛି ତୁମ ସାବତଝିଅ

ତାହାପରି ତୁମେ ସୁନ୍ଦରୀ ନୁହଁ।"

ଏକଥା ଶୁଣିଦେଇ ରାଣୀ ନିଆଁବାଣ ହୋଇଗଲା। କହିଲା, "ଏତେ କଲି, ସେ ଅପରଛନୀଟା ଆହୁରି ବଞ୍ଚିଛି!" ଏପରି କହି ସେ ପୁଣି ଥରେ ବେଶ ବଦଳାଇ ନଅରରୁ ବାହାରିପଡ଼ିଲା। ଏଥର କଣ କରିଥାଏ ନା, ଗୋଟିଏ ବିଷ ପାନିଆ ଧରିଥାଏ। ଇମିତି ବିଷ ଯେ, ମୁଣ୍ଡରେ ବାଜିଲେ ମଣିଷର ଚେତା ହଜିଯିବ। ଗୋଟିଏ ବାରିକିଆଣୀ ବେଶ ଧରି ସେ ଯାଇ ସାତ ବାମନଙ୍କ କୁଡ଼ିଆ ପାଖରେ ପହଞ୍ଚିଗଲା। ସେଠାରେ ବୁଲି ବୁଲି ଡାକପକାଇଲା, "ଆସ ଗୋ ଆସ! କିଏ ମୁଣ୍ଡ କୁଣ୍ଡାଇବ ଆସ ଗୋ, ଆସ। ସୁନ୍ଦର ପକାଇ କି ସୁନ୍ଦର ମୁଣ୍ଡ କୁଣ୍ଡେଇ ଦେବି ଯେ, ଦେଖିଲା ଲୋକ ଚାହିଁରହିବ; ଆସ ଗୋ ଆସ! କିଏ ମୁଣ୍ଡ କୁଣ୍ଡେଇବ।"

ଏ କଅଁଳ ଡାକ ଶୁଣି ତୁଷାର କୁମାରୀ ଝରକା ଖୋଲି ବାହାରକୁ ଚାହିଁଲା। ରାଣୀ ତ ବେଶ ବଦଳାଇ ଆସିଛି, ସେ ତାକୁ ଚିହ୍ନିବ କିପରି ? ତାକୁ ଦେଖି କପଟୀ ରାଣୀ କହିଲା, "ଆଗୋ ଝିଅ, ତୁମେ କେତେ କାଳୁ ମୁଣ୍ଡ କୁଣ୍ଡାଇ ନାହଁ କି ? ମୁଣ୍ଡ ବାଳ ତ ଅତୁଆ ହୋଇ ଜଟ ଧରିଲାଣି। ଦୁଆର ଖୋଲ, ମୁଁ ଯାଇ କୁଣ୍ଡାଇ ଦେବି।"

ତୁଷାର କୁମାରୀ କହିଲା, "ନାହିଁ ନାହିଁ, ମୁଁ ଦୁଆର ଖୋଲିବି ନାହିଁ। ବାହାର ଲୋକ ଭିତରକୁ ଆସିବା ମନା।"

କପଟୀ ରାଣୀ କହିଲା, "ତୁମକୁ ଇମିତି ବାନ୍ଧି ରଖିଛନ୍ତି ଯେ ମୁଣ୍ଡ କୁଣ୍ଡାଇବାକୁ ବାରିକିଆଣୀ ବି ପାଖ ମାଡ଼ିବ ନାହିଁ ? ହେଲା ଏବେ, ତୁମେ ଦୁଆରମୁହଁରେ ବସ, ମୁଁ ଏ ବାହାରେ ଠିଆହୋଇ ମୁଣ୍ଡଟା କୁଣ୍ଡାଇଦିଏ।"

ତୁଷାର କୁମାରୀ ମୁଣ୍ଡ କୁଣ୍ଡାଇବା ଲୋଭ ଛାଡ଼ି ପାରିଲା ନାହିଁ। ସେ କବାଟ ଖୋଲି ଦୁଆରମୁହଁରେ ବସିଲା। କପଟୀ ରାଣୀ ତା ମୁଣ୍ଡ କୁଣ୍ଡାଇ ଦେବ ବୋଲି ବିଷ ପାନିଆ କାଢ଼ିଲା। ସେ ବିଷ ପାନିଆ ମୁଣ୍ଡରେ ବାଜିଛି କି ନାହିଁ ତୁଷାର କୁମାରୀ ଅଚେତ ହୋଇ ତଳେ ଲୋଟି ପଡ଼ିଲା। କାମ ସରିଲା ଜାଣି କପଟୀ ରାଣୀ ଆଖିପିଛୁଳାକେ ସେଠାରୁ ପଳାଇଆସିଲା। ସନ୍ଧ୍ୟାବେଳକୁ

ସାତ ବାମନ ଆସି ଦେଖିଲାବେଳକୁ ତୁଷାର କୁମାରୀ ଦୁଆରମୁହଁରେ ପଡ଼ିଛି— ଚେତା ନାହିଁ କି ଚଇତନ ନାହିଁ। କଣ ହୋଇଛି ବୋଲି ଦେଖୁ ଦେଖୁ ମୁଣ୍ଡରେ ଲାଗିଥିବା ପାନିଆଟି ହାତରେ ପଡ଼ିଲା। ସେମାନେ ପାନିଆଟି କାଢ଼ିଆଣି ଅଣ୍ଡକା ଆଉଁସା କରିବାରୁ ତୁଷାର କୁମାରୀର ଚେତା ଆସିଗଲା। ସେ କହିଲା, "କାହିଁ ସେ ବାଗିକିଆଣୀ ? ମୋ ମୁଣ୍ଡ କୁଣ୍ଡାଇ ଦେଉଥିଲା, ଗଲା କୁଆଡ଼େ ?"

ସାତ ବାମନ ଜାଣିପାରିଲେ ଯେ ବାଗିକିଆଣୀ ସାଜି ଯେ ଆସିଥିଲା, ସେ ନିଶ୍ଚୟ ତୁଷାର କୁମାରୀର ସାବତମାଆ। ସେମାନେ ତୁଷାର କୁମାରୀକୁ ବହେ ଗାଳି ଦେଇ ପୁଣି ଥରେ ସାବଧାନ କରିଦେଲେ ଯେ ସେ ଯେପରି ଆଉ ଏପରି ଭୁଲ ନ କରେ; ଆଉ ପରଲୋକଙ୍କୁ ଘରେ ନପୂରାଏ।

ସେପଟେ ଡାହାଣୀ ରାଣୀ ତ ତୁଷାର କୁମାରୀକୁ ମାରିଦେଲା ଭାବି ମନେ ମନେ ଖୁସୀ ହୋଇ ରହିଥାଏ। ଦିନେ ତାର କଣ ମନ ହେଲା କେଜାଣି, ତା କୁହୁକ ଦର୍ପଣକୁ ପଚାରିଲା— "କହ ଦରପଣ କହ ରେ ସତେ
ମୋଠାରୁ ସୁନ୍ଦରୀ କିଏ ଜଗତେ ?"

କୁହୁକ ଦର୍ପଣ କହିଲା— "ସାତ ପରବତ ବଣ ସେପାରି
ସାତ ବାମନଙ୍କ କୁଡ଼ିଆ ଧରି,
ରହିଅଛି ତୁମ ସାବତଝିଅ
ତାହାପରି ତୁମେ ସୁନ୍ଦରୀ ନୁହଁ।"

ଏକଥା ଶୁଣିଦେଇ ରାଣୀ ଦାନ୍ତ କଡ଼ମଡ଼ କରି ବସିଥିବା ଜାଗାରୁ ଉଠିପଡ଼ିଲା। କହିଲା, "ଠିକ୍ ଅଛି, ଦେଖିବି ଏଥର ତାକୁ କିଏ ବଞ୍ଚେଇବ ? ସେ ତ ଅନେକ ଗୁଣି-ଗାରୁଡ଼ି ଜାଣେ। ତା ଗାରୁଡ଼ି ପୋଥି ଖୋଲି ସେଥିରୁ ଗୋଟିଏ କଡ଼ା ବିଷ-ଭାଗ ବାହାର କଲା। ସବୁ ମସଲା ପକାଇ ଏପରି କଡ଼ା ବିଷ ତିଆରି କଲା ଯେ, ସେଥିରୁ ଟିକିଏ ଜିଭରେ ବାଜିଗଲେ ମଣିଷ ମରିଯିବ। କିନ୍ତୁ ଏ ବିଷ ତୁଷାର କୁମାରୀ ପାଟିରେ ପୂରାଇବ କିପରି— ଭାବି ଭାବି ଗୋଟିଏ ଉପାୟ କଲା। ଗୋଟିଏ ସୁନ୍ଦର ସେଓ ଆଣି ତାର ନାଲି ପଟଟିରେ ଛୁଞ୍ଚି ମୁନରେ ଫୋଡ଼ିକରି ସେଥିରେ ବିଷଟକ ଭରିଦେଲା। ଧଳା ପଟଟି ଭଲ ଥାଏ। ତା'ପରେ ଡାଲାରେ ଡାଲାଏ ସେଓରେ ସେଓଟି ରଖି ଏଥର ଫଳବାଲୀ ବେଶରେ ଯାଇ ସାତ ବାମନଙ୍କ ଘର ପାଖରେ ପହଞ୍ଚିଗଲା। ଯାଇ ଡାକିଲା, "ସେଓ ନେବ ଆସ ଲୋ ଆସ। ବଡ଼ିଆ ସେଓ, ଗଛ ପାଚିଲା ସେଓ— କିଏ ଖାଇବ ଆସ ଲୋ, ଆସ।"

କିଏ ଗୋଟିଏ ସେଓ ବିକି ଆସିଲାଣି ବୋଲି ତୁଷାର କୁମାରୀ ଝରକା ଫିଟାଇ ଦେଲା। ଡାଲାରେ ଡାଲାଏ ସେଓ ଧରି କପଟୀ ରାଣୀ ସେଠାରେ

ଠିଆ ହୋଇଥାଏ । ତୁଷାର କୁମାରୀକୁ ଦେଖି ସେ ପଚାରିଲା, ‘‘ସେଓ ରଖିବ କି ଲୋ ମାଆ ! ଶସ୍ତାରେ ଦେଇଦେବି ।’’

ତୁଷାର କୁମାରୀ କହିଲା, ‘‘ନାହିଁ, ନାହିଁ, ବାହାର ଲୋକ ଏଠିକି ଆସନାହିଁ ।’’

ରାଣୀ କହିଲା, ‘‘ମଲା ଯା, ଚଖା ନାହିଁ ଦେଖା ନାହିଁ; କହିଲା କଣ ନା ନାହିଁ ନାହିଁ । ଆଗୋ, କବାଟ ଖୋଲ ! ସେଓଟିଏ ଚାଖିବ । ତେଣିକି ସୁଆଦ ଲାଗିଲେ କିଣିବ, ନ ହେଲେ ନାହିଁ । ମୁଁ କଣ ବାଧ କରୁଛି ?’’

ତୁଷାର କୁମାରୀ କହିଲା, ‘‘ଦୁଆର ଖୋଲିବାକୁ ମନା । ବାହାର ଲୋକ ଭିତରକୁ ଆସିବେ ନାହିଁ । ମୁଁ ଦି’ ଦି’ ଥର ଦଗା ପାଇଲିଣି; ଆଉ ନୁହେଁ ଲୋ ମାଉସି !’’

ରାଣୀ କହିଲା, ‘‘ମଲା, କୋଉ ଡାହାଣୀ ଡାକୁଣୀ ଦଗା ଦେଲା ବୋଲି ମତେ ଦୋଷ ଦେଉଛ ? ଦୁଆର ନ ଖୋଲ, ମୁଁ ସେଓଟିଏ କାଟି ଏଇ ଝରକାବାଟେ ବଢ଼ାଇ ଦେଉଚି । ଖାଅ, ସୁଆଦ କି ଅସୁଆଦ, ତୁମେ ନିଜେ ଚାଖି ଦେଖ ।’’

ତୁଷାର କହିଲା, ‘‘ନା, ନା, ମୁଁ ସେ ଜିନିଷ ଖାଇବି ନାହିଁ ।’’

ରାଣୀ କହିଲା, ‘‘କଣ ବିଷ ମହୁରା ମିଶିଥିଲା ପରି କହୁଛ ! ସେଓ କାଟି ଦେଇ ମୁଁ ଆଗ ଫାଳେ ଖାଉଛି, ତୁମେ ଆର ଫାଳକ ପରେ ଖାଅ । ବିଷ ମହୁରା ଥିଲେ ମୁଁ ମରିବି, ତୁମେ ବଞ୍ଚୁଥାଅ ।’’ ଏପରି କହି ରାଣୀ ବିଷଦିଆ ସେଓ ଏପରି ଦୁଇ ଫାଳ କରି କାଟିଦେଲା ଯେ ବିଷଦିଆ ଫାଳ ଓ ଭଲ ଫାଳ ଅଲଗା ଅଲଗା ହୋଇଗଲା । ରାଣୀ ଭଲ ଫାଳକୁ ଖାଇଦେଇ ତୁଷାର କୁମାରୀ ହାତକୁ ବିଷ ଫାଳକ ବଢ଼ାଇଦେଲା । ନାଲି ଟହଟହ ସେଓ, ବାସନାରେ ଫାଟିପଡୁଥାଏ । ସେଥିରୁ ଫାଳେ ଫଳବାଲୀ ଖାଇ ସାରିଲାଣି । ତେଣୁ ତୁଷାର କୁମାରୀ ସେ ଫାଳକୁ ଟିକିଏ ଚାଖିଦେଲା । ଆଉ ଯାଏ କୁଆଡ଼େ । ସେ ବିଷମିଶା ସେଓ ତ ଜିଭରେ ବାଜୁ ବାଜୁ ସେ ତଳେ ଓଲଟି ପଡ଼ିଲା । ତେଣେ କାମ ହାସଲ ହୋଇଗଲା ଦେଖି କପଟୀ ରାଣୀ ନିଜ ନଅରକୁ ପଳାଇଆସିଲା ।

ସନ୍ଧ୍ୟାବେଳକୁ ସାତ ବାମନ ଘରକୁ ଆସି ଦେଖନ୍ତି ତ ତୁଷାର କୁମାରୀ ମରି ପଡ଼ିଛି । ସେମାନେ କେତେ ଅଣ୍ଡଳା ଆଉଁସା କଲେ, କେତେ ପାଣି ଛିଞ୍ଚିଲେ— କେଉଁଥିରେ କିଛି ହେଲା ନାହିଁ । ବିଷ ସେଓ ଖଣ୍ଡଟି ତ ତା ପାଟିରେ ଅଛି, ଏମାନେ ଆଉ ଦେଖିଥାନ୍ତେ କିପରି ? ଭାବିଲେ ବିଚାରୀ ମରିଗଲା । ମଲା ମଣିଷକୁ ସମାଧି ଦେଇଦେବା କଥା । କିନ୍ତୁ ସାତ ବାମନ ତାକୁ ସମାଧି ନ ଦେଇ ଗୋଟିଏ ବଡ଼ କାଚ ବାକ୍ସ ଭିତରେ ଶୁଆଇ ଦେଲେ । ବାକ୍ସଟି ନେଇ ପର୍ବତ ଉପରେ ଥୋଇଦେଲେ । ତୁଷାର କୁମାରୀ ସେ ଭିତରେ ମରି ପଡ଼ିଥାଏ— ହେଲେ ତା ଦେହର ଜ୍ୟୋତି ଟିକିଏ ହେଲେ ଲିଭି ନ ଥାଏ । ଦେଖିଲେ

ମନେ ହେଉଥାଏ, ସତେ ଯେପରି ସେ ନିଘୋଡ଼ ନିଦରେ ଶୋଇଛି ! ବାମନମାନେ ଭାବିଲେ, ଯଦି ପରମାୟୁ ଥିବ, ତେବେ ବାହାରର ଆଲୁଅ ପବନ ବାଜିଲେ ଅବା ବଞ୍ଚିଯିବ। ତେଣୁ ସାତ ବାମନ ପାଳି କରି ସେ କାଚ଼ ବାକ୍ସଟିକୁ ଦିନରାତି ଜଗିଲେ। ଛ' ଜଣ ବୁଲି ଯାଆନ୍ତି, ଜଣେ ଜଗେ।

ଏପରି କିଛି ଦିନ ଯିବା ପରେ ଦିନେ କଣ ହୋଇଛି ନା, ଆଉ ଗୋଟିଏ ରାଜ୍ୟର ରଜାପୁଅ ପାରିଧିରୁ ଫେରୁ ଫେରୁ ବାଟବଣା ହୋଇ ସେହି ପର୍ବତ ଉପରେ ଆସି ପହଞ୍ଚିଗଲେ। ବାମନଙ୍କ ସହିତ କଥାଭାଷା ହେଉ ହେଉ ତୁଷାର କୁମାରୀ ମରି ଶୋଇଥିବା କାଚ଼ ବାକ୍ସଟି ତାଙ୍କ ଆଖିରେ ପଡ଼ିଲା। ସେପରି ପଡ଼ିଥିବା ବେଳେ ବି ତାର ସେ ଯେଉଁ ରୂପ, ସେ ଯେଉଁ ଜ୍ୟୋତି— ଦେଖି ରଜାପୁଅ ମୋହିହୋଇଗଲା। ବାମନଙ୍କୁ ବହୁ କାକୁତି ମିନତି କରି କହିଲା, "ଏ ମରିଥାଉ କି ବଞ୍ଚିଥାଉ, ମୁଁ ଏହାକୁ ନେଇ ନଅରରେ ରଖିବି। ମୋତେ ଏହାକୁ ଦିଅନ୍ତୁ।"

ରଜାପୁଅର କାକୁତି ମିନତି ଦେଖି ବାମନମାନଙ୍କର ମନ ତରଳି ଗଲା। ସେମାନେ ତାଙ୍କୁ ସେହି କାଚ଼ ବାକ୍ସ ସଙ୍ଗେ ତୁଷାର କୁମାରୀକୁ ଦେଇଦେଲେ। ଏତିକିବେଳକୁ ରଜାପୁଅକୁ ଖୋଜି ଖୋଜି ତା ବାଣୁଆ ପାଇକମାନେ ଆସି ସେଠାରେ ପହଞ୍ଚିଗଲେ। ରଜାପୁଅ କହିଲା, "ମୋର ଆଉ ଚିନ୍ତା ନାହିଁ। ତୁମେ ଖୁବ୍ ସାବଧାନରେ ଏ କାଚ଼ ବାକ୍ସକୁ ଟେକି ନେଇ ନଅରକୁ ଚାଲ; ଦେଖ, ଯେପରି ହଲିବ ନାହିଁ କି ଚହଲିବ ନାହିଁ।" ବାଣୁଆ ପାଇକମାନେ ଯେତେ ସାବଧାନରେ ଟେକିଲେ ବି କାଚ଼ ବାକ୍ସଟି ଟିକିଏ ଦୋହଲି ଗଲା। ତା ସଙ୍ଗେ ସଙ୍ଗେ ତୁଷାର କୁମାରୀ ପାଟିରୁ ସେ ବିଷ ସେଓ ଖଣ୍ଡିକ ବି ଖସିପଡ଼ିଲା। ତେଣେ ବାହାର ଆଲୁଅ ପବନ ବାଜି ସେ ହୋସ୍ ପାଇ ବସିପଡ଼ିଲା। ଏଥର ଦେଖ ରଜାପୁଅର ଖୁସି ! ଦେଖ ସେ ବାମନଙ୍କର ଖୁସି ! ବାମନମାନେ ତାକୁ ଖୋଇପେଇ ତାଜା କରି ରଜାପୁଅ ସାଥିରେ ଛାଡ଼ିଦେଲେ। କହିଲେ, "ମାଆ ଲୋ, ତୁ ଆମର ଅନେକ ସେବା କଲୁ। ଏଥର ରଜାଝିଅ ରଜାଘରେ ସୁଖରେ ରହ।"

ରଜାପୁଅ ତୁଷାର କୁମାରୀକୁ ସାଙ୍ଗରେ ନେଇ ତା ନଅରକୁ ପଳାଇ ଆସିଲା। ତାର ବୁଢ଼ା ବାପା, ବୁଢ଼ୀ ମାଆ ଥାଆନ୍ତି। ସେମାନେ ଏକୁ ଦେଖୁ ଦେଖୁ କହିଲେ, "ଏଇଟି ଆମ ପୁଅ ଲାଖି ବୋହୂ; ଏ ଆମର ଯୁବରାଣୀ ହୋଇ ରହୁ।" ସଙ୍ଗେ ସଙ୍ଗେ ବାହାଘର ପାଇଁ ଯୋଗାଡ଼ଯତ୍ନ ଆରମ୍ଭ ହୋଇଗଲା। ପାଖଆଖ ରଜା ମହାରଜାଙ୍କୁ ନିମନ୍ତ୍ରଣ ପଠାଗଲା। ଆନନ୍ଦ ମହୋତ୍ସବ ଭିତରେ ବାହାଘର ଆରମ୍ଭ ହୋଇଗଲା। ନାନା ଦେଶରୁ ରଜା ରାଣୀ ସବୁ ଆସିଥାନ୍ତି। ତୁଷାର କୁମାରୀ ବାପା ଓ ସାବତମାଆ ମଧ ସେଠାକୁ ଆସିଥାନ୍ତି। ସେ ତାହାଣୀ ରାଣୀର ଜଗତସୁନ୍ଦରୀ ବୋଲି ଭାରି ଗର୍ବ ଥାଏ। ସେ ତାର ଭଲ ଭଲ

ପୋଷାକ ଅଳଙ୍କାର ପିନ୍ଧି ବରକନ୍ୟାଙ୍କୁ ଦେଖିବ ବୋଲି ଆସୁ ଆସୁ ତା କୁହୁକ ଦର୍ପଣକୁ ପଚାରିଦେଲା— "କହ ଦରପଣ କହ ରେ ସତେ
ମୋଠାରୁ ସୁନ୍ଦରୀ କିଏ ଜଗତେ ?"

କୁହୁକ ଦର୍ପଣ କହିଲା— "ଶୁଣ ଗୋ ରାଣୀ
ତୁମେ ନିଶ୍ଚୟ-ସୁନ୍ଦରୀମଣି;
(ହେଲେ ଏ ଯେଉଁ) ନୂଆ ଯୁବରାଣୀ ବାହାହୋଇବେ
ସେପରି ସୁନ୍ଦରୀ କେହି ନୋହିବେ।"

ଏ କଥା ଶୁଣିଦେଇ ସେ ରାଣୀ ତ ଈର୍ଷାରେ ମାରେ କି ମରେ ହୋଇଗଲା। ସତେ କଣ ଏ ଯୁବରାଣୀ ଏଡ଼େ ସୁନ୍ଦରୀ ! ନିଜ ଆଖିରେ ଦେଖିବ ବୋଲି ସେ ଲସରପସର ହୋଇ ପକାଇଆସେ ତ, ଦେଖିଲା କନ୍ୟା ହୋଇ ବସିଛି ତାର ସାବତଝିଅ ତୁଷାର କୁମାରୀ। ତା ରୂପରେ ସେ ଖଣ୍ଡମଣ୍ଡଳ ଖାଲି ଜଳୁଛି ! ସେ ରୂପ ଦେଖି ତାହାଣୀର ରାଗ ଈର୍ଷା ଆହୁରି ବଢ଼ିଗଲା। ତା'ଦେହ ମୁହଁ ରାଗରେ ଇମିତି ଲାଲ ହୋଇଗଲା ଯେ, ଦେଖୁ ଦେଖୁ ତା ମୂର୍ଦ୍ଧନା ଫାଟିଗଲା। ତୁଷାର କୁମାରୀ କଣ କରିବ— ନିଜ ରାଗରେ ନିଜେ ମଲା।

ତୁଷାର କୁମାରୀ ରଜାପୁଅକୁ ବାହାହୋଇ ଅନେକ କାଳଯାଏ ପରଜା ପାଳିଲା।

## ନାକ

ତୁମେ ସେ ତିନି ସିପାହିଙ୍କ କଥା ଶୁଣିଛ ? —ରଜା ଯେଉଁମାନଙ୍କୁ ଯୁଦ୍ଧ ସରୁ ସରୁ ଚାକିରିରୁ କାଢ଼ିଦେଲେ ଯେ ସେମାନଙ୍କର ଭିକ ମାଗି ବୁଲିବା ଛଡ଼ା ଅନ୍ୟ ଗତି ରହିଲା ନାହିଁ। ଶୁଣିନା ? ଶୁଣ, କହୁଛି।

ଘମାଘୋଟ ଯୁଦ୍ଧ ତ ଲାଗିଥିଲା। ଏ ତିନି ସିପାହି ଖୁବ୍ ଲଢ଼ିଲେ। ଲଢ଼ିବା ଛଡ଼ା ଆଉ କିଛି ବିଦ୍ୟା ଶିଖିଲେ ନାହିଁ। କିନ୍ତୁ ଶେଷକୁ ଯୁଦ୍ଧ ଯେତେବେଳେ ସରିଗଲା, ରଜା କହିଲେ, "ତୁମ କାମ ସରିଲା; ଏଥର ଯାଅ। ପୁଣି ଲୋଡ଼ା ପଡ଼ିଲେ ଡକାଇବା।" ଯୁଦ୍ଧ ଚାଲିଥିଲାଯାକ ଖାଉଥିଲେ ପିନ୍ଧୁଥିଲେ ଉଡ଼ଉଥିଲେ; କିନ୍ତୁ ଏଇଲେ ରଜା ତ ହାତରେ କଉଡ଼ିଟିଏ ନ ଦେଇ ବିଦା କରିଦେଲେ, —ଆଉ କରିବେ କଣ ? ତିନି ସାଙ୍ଗ କପାଳକୁ ନିନ୍ଦି ବୁଲୁ ବୁଲୁ ଦିନେ ଆସି ଗୋଟିଏ ବଣରେ ପହଞ୍ଚିଲେ। ବିରାଟ ବଣ; ପାରେ ହେଉ ହେଉ ରାତି ହୋଇଗଲା। ସୁବିଧା ହେଉ ଅସୁବିଧା ହେଉ, ସେହି ବଣରେହିଁ ରାତି କଟାଇବାକୁ ପଡ଼ିବ। ତେଣୁ ତିନି ସାଙ୍ଗ ଠିକ୍ କଲେ ଗୋଟିଏ ଗଛ ତଳେ ଦୁଇଜଣ ଶୋଇବେ;

ତୃତୀୟ ଜଣକ ଜଗିବ। ସେ ପହରେ ଜଗି ସାରିବା ପରେ ଶୋଇଥିବା ଦୁଇ ଜଣ ଭିତରୁ ଜଣକୁ ଉଠାଇ ନିଜେ ଶୋଇବ। ଏହିପରି ପାଳିକରି ନ ଜଗିଲେ ବଣଜନ୍ତୁ ଆସି କେତେବେଳେ ଯେ ମାଡ଼ିବସିବେ, ଜାଣିପାରିବେ ନାହିଁ।

ରାତି ଦି'ପହର ବେଳକୁ ଦି'ଜଣ ଶୋଇଛନ୍ତି। ଜଗି ବସିଥିବା ଜଣକ ଧୁନିଟିଏ ଜାଳି ନିଆଁ ପୋଉଁଛି— କେଉଁଠୁ କେଜାଣି ଗୋଟିଏ ବାମନ ବୁଢ଼ା ଆସି ଡାକ ପକାଇଲା, "ମୋ ବଣରେ କିଏ ରେ ?"

ଜଗିଥିବା ସିପାହି କହିଲା, "ବଇରୀ ନୁହ, ମଇତ୍ର।"

ବୁଢ଼ା ପଚାରିଲା, "କି ମଇତ୍ର ରେ ?"

ସିପାହି କହିଲା, "ଲଢ଼େଇ ସରିଲା; କାମ ଧନ୍ଦା କିଛି ନ ପାଇ ତିନି ସାଙ୍ଗ ସିପାହି ଇମିତି ବୁଲୁଛୁ। ଦି'ଜଣ ଶୋଇଛନ୍ତି, ମୁଁ ଜଗିଛି। ପାଖକୁ ଆସୁନା, ବଢ଼ିଆ ନିଆଁ ହୋଇଛି— ଟିକିଏ ନିଆଁ ପୋଉଁବ ଆସ !"

ବାମନ ବୁଢ଼ା ଆସି ନିଆଁ ପାଖରେ ବସିଗଲା। ନାଲି କୋଟ୍‌ଟିଏ ପିନ୍ଧିଥାଏ। ରଡ଼ ନିଆଁରେ ଗୋଡ଼ ହାତ ସେକି ହୋଇ କହିଲା, "ହେଉ ପୁଅ, ଯାଉଛି। ନିଅ, ତୁମକୁ ମୋର ଏ ପୁରୁଣା କୋଟ୍ ଖଣ୍ଡିକ ଦେଉଛି। ଏ କୋଟ୍‌ର ନାମ 'ମନତୋଷ କୋଟ୍'। ଏକୁ ପିନ୍ଧିପକାଇ ତୁମେ ଯାହା ଇଚ୍ଛା କରିବ, ତା' ହୋଇଯିବ।" କୋଟ୍ ଖଣ୍ଡିକ ଦେଇ ବୁଢ଼ା ଚାଲିଗଲା। ପ୍ରଥମ ସିପାହିକୁ ସେତେବେଳକୁ ନିଦ ଝାଙ୍କିଲାଣି। ସେ ଦ୍ୱିତୀୟ ସିପାହିକୁ ଉଠାଇ ଦେଇ ନିଜେ ଶୋଇପଡ଼ିଲା। ଦ୍ୱିତୀୟ ସିପାହି ପହରେ ଖଣ୍ଡେ ଜଗିବା ପରେ ବଣ ଭିତରେ ସେହି ବାମନ ବୁଢ଼ା ଡାକ ପକାଇଲା, "ମୋ ବଣରେ କିଏ ରେ ?"

ଦ୍ୱିତୀୟ ସିପାହି କହିଲା, "ବଇରୀ ନୁହଁ ହେ, ମଇତ୍ର। ଆସୁନା ଟିକିଏ ନିଆଁ ପୋଉଁବ, ଆସ !"

ଡାକରା ପାଇ ବୁଢ଼ା ଆସି ନିଆଁ ପୋଉଁଲା। ନିଆଁ ପୋଉଁସାରି ଗଲାବେଳେ ସେ ଦ୍ୱିତୀୟ ସିପାହିକୁ ଗୋଟିଏ ଥଳି ଦେଇଗଲା। କହିଲା, "ଏ ଥଳି ନାଁ 'ଭରପୂର ଥଳି'। ତୁମେ ଏଥିରୁ ଯେତେ ପଇସା ଖର୍ଚ୍ଚ କଲେ ବି, ଏ ସବୁବେଳେ ଭରପୂର ହୋଇ ରହିଥିବ।"

ଦ୍ୱିତୀୟ ସିପାହି ବୁଢ଼ାକୁ ବିଦା କରି କିଛି ସମୟ ବସିଛି, ତାକୁ ପୁଣି ଥରେ ନିଦ ଲାଗିଲା। ସେ ତୃତୀୟ ସିପାହିକୁ ଉଠାଇଦେଇ କହିଲା, "ଭାଇ, ଏଥର ତୋ ପାଳି; ତୁ ଜଗ, ମୁଁ ଶୋଉଛି।"

ତୃତୀୟ ସିପାହି ନିଆଁ ପୋଉଁ ବସିଛି; ସେପଟୁ ନାଲି କୋଟ୍ ପିନ୍ଧା ବାମନ ବୁଢ଼ା ଡାକ ପକାଇଲା, "ମୋ ବଣରେ କିଏ ରେ ?" ତୃତୀୟ ସିପାହି ବି କହିଲା ଯେ, ସେ ତା ମଇତ୍ର। ତା'ପରେ ସେ ବୁଢ଼ାକୁ ନିଆଁ ପୋଉଁବାକୁ

ଡାକିଲା। ବୁଢ଼ା ନିଆଁ ପୋଇଁସାଗି ଗଲାବେଳେ ତୃତୀୟ ସିପାହିକୁ ଗୋଟିଏ ଶିଙ୍ଗା ଦେଇ କହିଲା, "ନେ, ଏଇଟି ରଖିଥା। ଏ ହେଲା "ମାର ମାର ଶିଙ୍ଗା।" ଏକୁ ବଜାଇ ଦେଇ 'କାହିଁ ରେ, ମୋ ସୈନ୍ୟ ସାମନ୍ତ ଆସିଲ' ବୋଲି ଡାକିଦେଲେ ଲକ୍ଷ ଲକ୍ଷ ସୈନ୍ୟ ଆସି ତୋ ଚାରିପଟେ ଜମିଯିବେ। ତୁ ଯାହାକୁ ମାର ବୋଲି କହିବୁ, ସେମାନେ ତାକୁ ମାରି ସାବାଡ଼ କରିଦେବେ।" ଏତିକି କହି ବୁଢ଼ା ଚାଲିଗଲା।

ସକାଳେ ତିନି ସାଙ୍ଗ ଉଠି କଥାଭାଷା ହେଉ ହେଉ ବାମନ ବୁଢ଼ାଠାରୁ ଯିଏ ଯେଉଁ ଉପହାର ପାଇଥିଲେ, ସେ ସବୁ ବାହାର କଲେ। ଏପରି ତିନୋଟି ଅପୂର୍ବ ଜିନିଷ ପାଇ ସେମାନେ ଖୁସି ହୋଇଗଲେ ଯେ, କହିଲେ, "ଆମର ଚିନ୍ତା କଣ? ଅନେକ ବୁଲିଲେଣି, ଅନେକ ଦୁଃଖକଷ୍ଟ ପାଇଲେଣି। ଚାଲ, ଏଥର କେଉଁଠି ଟିକିଏ ଆରାମରେ ରହିଯିବା।" ବଣ ପାର ହୋଇ ଗୋଟିଏ ପଡ଼ିଆରେ ପହଞ୍ଚୁ ପହଞ୍ଚୁ ପ୍ରଥମ ସିପାହି ତା ମନତୋଷ କୋଟ୍‌ଟି ପିନ୍ଧିପକାଇଲା। କହିଲା, "ଆମପାଇଁ ଗୋଟିଏ ନଅର ହୋଇ ସୁଖରେ ରହିବାର ସବୁ ବନ୍ଦୋବସ୍ତ ହେଲେ ବଡ଼ ଭଲ ହୁଅନ୍ତା।" ତା ପାଟିରୁ ଏତକ ବାହାରିଛି କି ନାହିଁ, ସେ ପଡ଼ିଆରେ ଗୋଟିଏ ସୁନ୍ଦର ନଅର ହୋଇଗଲା। ଦେଖ, ଚାକରବାକର କାମରେ ଲାଗିଛନ୍ତି। ଚାହୁଁ ଚାହୁଁ ଗୋଟିଏ ଘୋଡ଼ାଟଣା ଗାଡ଼ି ଆସି ଏ ତିନି ସିପାହିଙ୍କ ପାଖରେ ପହଞ୍ଚିଗଲା। ଗାଡ଼ି ଭିତରୁ ଜଣେ ଚାକର ଓହ୍ଲାଇ ପଡ଼ି ଏମାନଙ୍କୁ କହିଲା, "ହଜୁର, ନଅରକୁ ବିଜେ କରନ୍ତୁ! ଖାନାପିନା ତିଆରି ହୋଇ ରହିଛି। ମଣୋହି ସରିଲେ ଶୋଇବେ।"

ଏ ତିନି ସିପାହି ଖୁସିରେ ନଅରରେ ପଶିଗଲେ। କି ସୁନ୍ଦର ଘରଦ୍ୱାର ହୋଇଥାଏ! କି ସୁନ୍ଦର ବଗିଚା! କେତେ ଚାକରବାକର; ସେ କଥା ଆଉ କହି ହେବ ନାହିଁ। ଏମାନେ ଖାଇବା ଘରେ ବସୁ ବସୁ ନାନା ପ୍ରକାର ଖାଦ୍ୟ ଆସି ବଢ଼ାହୋଇଗଲା। ମନତୋଷ ଖାନା ଖାଇ ତିନି ସାଙ୍ଗ ଆସି ପଲଙ୍କମାନଙ୍କରେ ଶୋଇପଡ଼ିଲେ। ସେହିଦିନଠାରୁ ସେମାନଙ୍କର ଅଭାବ ବୋଲି କିଛି ରହିଲା ନାହିଁ। ତିନି ସାଙ୍ଗ ଆରାମରେ କାଳ କାଟିଲେ ସତ; କିନ୍ତୁ ଯେଉଁମାନେ ଏତେ ଦିନ ହେଲା ଲଢ଼େଇ କରି, ବୁଲିଚାଲି ଡେଇଁମାଡି ଚଳୁଥିଲେ, ସେମାନଙ୍କୁ ଗୋଟିଏ ଜାଗାରେ ବାନ୍ଧିହୋଇ ରହିବାକୁ ମୋଟେ ଭଲ ଲାଗିଲା ନାହିଁ। ତେଣୁ ଜାକଜମକରେ ଲୁଗାପଟା ପିନ୍ଧି ଧନଦରବ, ଚାକରବାକର ଧରି ଗୋଟିଏ ମସ୍ତବଡ଼ ଘୋଡ଼ାଗାଡ଼ି କରି ତିନି ସାଙ୍ଗ ବିଦେଶ ବୁଲି ବାହାରି ପଡ଼ିଲେ। ଆଗ ଯାଇ ପହଞ୍ଚିଗଲେ ପଡ଼ିଶା ଦେଶର ରାଜାଙ୍କ ନଅରରେ। ଏମାନଙ୍କର ଆଡ଼ା-ଚଉଡ଼ା ଦେଖି ରାଜା ଭାବିଲେ, ନିଶ୍ଚୟ କେଉଁ ଦେଶର ରଜା-ଜମିଦାରଘର ପୁଅ ହୋଇଥିବେ! ତେଣୁ

ଏ ତିନିଙ୍କୁ କୁଣିଆ କରି ରଖିଲେ। ତାଙ୍କର ତ ଗୋଟିଏ ଝିଅ ଥାଏ। ଭାବିଲେ, ଏଥରୁ ଜଣକୁ ଜ୍ୱାଇଁ କରି ପାରିଲେ ଗୋଟାଏ ବୋଝ ଓହ୍ଲାଇ ଯାଆନ୍ତା। ତେଣୁ ଏମାନଙ୍କୁ ନେଇ ଝିଅ ସହିତ ଦେଖା-ସାକ୍ଷାତ କରାଇ ଦେଲେ। ସେ ଝିଅଟି କିନ୍ତୁ ଅସଲ ଚଣ୍ଡୀ। ତାକୁ ଗୁଣି-ଗାରୁଡ଼ି ଜଣାଥାଏ। ସେ ବର କଣ ବାଛିବ, ଏମାନଙ୍କୁ ନିଜ କବଳରେ ପକାଇବାକୁ ଓର ଉଣ୍ଡିଲା।

ଦିନକର କଥା। ଦ୍ୱିତୀୟ ସିପାହି ସାଙ୍ଗରେ ସେ ବୁଲି ବାହାରିଛି, ଦେଖିଲା ଏ ସିପାହି ଯାହାକୁ ଦେଖିଲା ତାକୁ ମୁଠା ମୁଠା ସୁନା ମୋହର କାଢ଼ି ଦେଇଦେଉଛି। ରଜାଝିଅ ଆଶ୍ଚର୍ଯ୍ୟ ହୋଇ ପଚାରିଲା, ''ତୁମେ ଲୋକଙ୍କୁ ଏତେ ମୋହର ବାଣ୍ଟିଦେଉଛ; କେତେ ଏମିତି ଆଣିଛ କି?''

ଦ୍ୱିତୀୟ ସିପାହି ତ ଏ କୂଟ କପଟ ଜାଣେନି। ସେ କହିଦେଲା, ''ମୋର ଏ ଯେଉଁ ମୁଣିଟି ଦେଖୁଛ, ସେଥିରୁ ଯେତେ ମୋହର କାଢ଼ିପାରିବ, ସେତେ ବାହାରିବ। ତେଣୁ ମୋର ଚିନ୍ତା କଣ?''

''ଏ କିପରି କଥା?'' – ରଜାଝିଅ ପଚାରିଲା।

ଦ୍ୱିତୀୟ ସିପାହି ମୂଳରୁ ଚୂଳଯାଏ ସବୁକଥା ସେ ଝିଅକୁ କହିଦେଲା। ରଜାଝିଅ ଜାଣିଗଲା ଯେ ଏ ତିନିଟା ସତରେ ଫଟା ଦରିଦ୍ର ସିପାହି; ଖାଲି ଏ କୁହୁକ ବଳରେ ଏପରି ବଡ଼ଲୋକି ଦେଖାଉଛନ୍ତି। ତେଣୁ ସେ କଣ କଲା ନା, ଠିକ୍ ଦ୍ୱିତୀୟ ସିପାହିର ମୁଣି ଭଳି ଗୋଟିଏ ମୁଣି ସିଲେଇ କରି ନିଜ ପାଖରେ ରଖିଲା। ତା'ପର ଦିନ ସନ୍ଧ୍ୟାରେ ଦ୍ୱିତୀୟ ସିପାହିକୁ ସେ ଖାଇବାକୁ ନିମନ୍ତ୍ରଣ କଲା। ସେହି ଖାଇବା ଭିତରେ ସେ ଝିଅ ଏ ସିପାହିକୁ କଣ ଟିକିଏ ଜିନିଷ ଖୋଇଦେଲା ଯେ, ଭଏ ଅଚେତ ହୋଇ ଶୋଇପଡ଼ିଲା। ସେହି ମଉକାରେ ରଜାଝିଅ ଭରପୂର ମୁଣି ନେଇଯାଇ ତା ହାତରେ ନକଲି ମୁଣିଟି ଧରେଇ ଦେଲା। ନିଶା ଛାଡ଼ିବା ପରେ ଦ୍ୱିତୀୟ ସିପାହି ତା ସାଙ୍ଗମାନଙ୍କ ପାଖକୁ ପଳାଇ ଆସିଲା। ତା ବାସିଦିନ ତିନି ସାଙ୍ଗ ପୁଣି ଥରେ ନିଜ ନଅରକୁ ଚାଲିଆସିଲେ। ଦିନେ ଦି'ଦିନ ପରେ କଣ ଗୋଟିଏ କାମ ପାଇଁ ଟଙ୍କା ପଇସା ଲୋଡ଼ା ପଡ଼ିବାରୁ ଦ୍ୱିତୀୟ ସିପାହି ତା ମୁଣି ଭିତରେ ହାତ ପୂରାଇଦିଏ ତ, ସେଇଟା ଭିତରେ କିଛି ବୋଲି କିଛି ନାହିଁ। କାବା ହୋଇ ମୁଣିଟାକୁ ଖୋଲି ଝାଡ଼ି ପକାଇଲା। କିନ୍ତୁ ସେଇଟା ତ ନକଲି ମୁଣି, ସେଥିରେ ଟଙ୍କାପଇସା ଆସିବ କେଉଁଠୁ? ଖିଆପିଆ, ଲୁଗାପଟା ଅଭାବ ନଥାଏ ସତ, ହେଲେ ନଗଦ ପଇସା ଗୋଟିଏ ବୋଲି ହାତରେ ପଡ଼ିଲା ନାହିଁ। କୁହୁକ ମୁଣିଟା କିଏ ସେ ନେଇଗଲା ବୋଲି ଧନ୍ଦି ହେଉ ହେଉ ଦ୍ୱିତୀୟ ସିପାହିର ମନେପଡ଼ିଲା ଯେ ସେ ରଜାଝିଅକୁ ଏ ବିଷୟରେ କହିଦେଇଥିଲା; ନିଶ୍ଚୟ ସେହିଁ ମୁଣିଟା ଠକି ନେଇଛି। ସେ

ଭାରି ବ୍ୟସ୍ତ ହେଉଛି ଦେଖି ପ୍ରଥମ ସିପାହି କହିଲା, "ଆରେ, ଏମିତି ବ୍ୟସ୍ତ ହେଲେ ଅକାଳରେ ବୁଢ଼ା ହୋଇଯିବୁ। ତୁ ନିଶ୍ଚିନ୍ତ ରହ, ତୋ ଜୁହୁକ ଥଳି କିପରି ମିଳିବ, ମୁଁ ସେ ଉପାୟ କରୁଛି।" ଏପରି କହି ସେ ମନତୋଷ କୋଟ୍‌ଟି ପିନ୍ଧିପକାଇଲା। କହିଲା, "ମୁଁ ଏ ମୁହୂର୍ତ୍ତରେ ରଜାଝିଅ ପାଖରେ ଠିଆହୋଇଯିବି" —କହୁ କହୁ ସେ ଶୂନ୍ୟେ ଶୂନ୍ୟେ ରଜାଝିଅ ପାଖରେ ଯାଇ ଠିଆହୋଇଗଲା। ରଜାଝିଅ ତାର ଦୁଆର କବାଟ ଦେଇ ଭରପୂର ମୁଣିରୁ ମୁଠା ମୁଠା ମୋହର କାଢ଼ି ଗଣିଚାଲିଥାଏ। ସେତେବେଳକୁ ତା ସିନ୍ଦୁକରେ ସିନ୍ଦୁକେ ମୋହର ଥାକ ମାରି ସାରିଲାଣି। ଏ ସିପାହି ଯାଇ ଯେତେବେଳେ ତା ଆଗରେ ଠିଆ ହୋଇଗଲା, ଛାନିଆରେ ତା ଦେହରୁ ଗୋଟାଏ ଯମଝାଳ ବୋହିଗଲା। ସେ ଏକୁ ଚୋର କି ଡକେଇତ ଭାବି ରଡ଼ି ଛାଡ଼ିଦେଲା— ଚୋର, ଚୋର, ଚୋର...। ତା ରଡ଼ି ଶୁଣି ରଜାଘର ଜଗୁଆଳି ପହ୍ରିଆରୀମାନେ ଖଣ୍ଡା କାତି ଧରି ଧାଇଁ ଆସିଲେ। ସେମାନଙ୍କ ମାର ମାର ଶବ୍ଦରେ ଚାରିଆଡ଼ କମ୍ପିଗଲା। ବିପଦରେ ପଡ଼ିଗଲେ ମଣିଷର ବୁଦ୍ଧି ହଜିଯାଏ। ଏ ସିପାହି ତାର ମନତୋଷ ଜାମା ପିନ୍ଧି ଉଭାନ ହୋଇଯାଇଥାନ୍ତା; କିନ୍ତୁ ତାହା ନ କରି ସେ ଖାଲି କିପରି ସେଠାରୁ ଖସି ପଳାଇବ, ସେହି ବାଟ ଖୋଜିଲା। ଏ ଭିତରେ ରାଜଝିଅ ତିନି ସିପାହି ଭିତରୁ ଏ ପ୍ରଥମ ସିପାହି ବୋଲି ଚିହ୍ନିଗଲାଣି। ଏ ବିଚରା କେଉଁ ବାଟେ ପଳାଇବ ବୋଲି ବାଟ ଖୋଜୁ ଖୋଜୁ ଦେଖିଲା, ସେ ଝରକାଟା ଖୋଲା ଅଛି। ରଜାଙ୍କ ଜଗୁଆଳମାନେ ଆସିବା ପୂର୍ବରୁ ସେ ଝରକା ଦେଇ ତଳକୁ ଡେଇଁପଡ଼ିଲା। କିନ୍ତୁ ଦୁର୍ଯୋଗକୁ ସେ ଡେଇଁବା ବେଳେ ତା' ମନତୋଷ ଜାମାଟା ଝରକା କଣ୍ଟାରେ ଲାଗିଗଲା। ସେ ତ ପ୍ରାଣବିକଳରେ ଦୌଡ଼ି ଆସିଲା, ଆଉ ସେ ଜାମାଟା ଆଣିପାରିଲା ନାହିଁ। ସେହି ମଉକାରେ ରଜାଝିଅ ହ. ଇଠ କରି ଆହୁରି ଖୁସି ହୋଇଗଲା।

ପ୍ରଥମ ସିପାହି ନଅରକୁ ଫେରିବା ବେଳକୁ ଆଉ ସେ ନଅର ନାହିଁ, କି ଚାକରବାକର ନାହାନ୍ତି। ମନତୋଷ ଜାମାଟି ତା ହାତରୁ ଚାଲିଯିବା ପରଠାରୁ ସେ ନଅର ବି ଉଭାନ ହୋଇଗଲା। ଭରପୂର ମୁଣି ଗଲା, ମନତୋଷ ଜାମା ଗଲା— ଧନଦରବ ହାତରେ କିଛି ନାହିଁ। କଣ କରିବେ ବୋଲି ତିନି ସିପାହି ଚିନ୍ତାରେ ପଡ଼ିଗଲେ। କିନ୍ତୁ ତୃତୀୟ ସିପାହି ହଠାତ୍ ବସିଥିବା ଜାଗାରୁ ଉଠିପଡ଼ି କହିଲା, "ଏତେ ଚିନ୍ତା କର ନାହିଁ ଭାଇ! ମୁଁ ସବୁ ଠିକ୍ କରି ଦେଉଛି।" ଏହା କହି ସେ ତା ମାର ମାର ଶିଙ୍ଗା ଧରି ବାହାରି ପଡ଼ିଲା। ପଡ଼ିଶା ରାଜ୍ୟକୁ ଯାଇ ଶିଙ୍ଗା ବଜାଇ ଦେଇ କହିଲା, "କାହିଁ ରେ, ମୋ ସୈନ୍ୟ-ସାମନ୍ତ

ଆସିଲା!'' ସଙ୍ଗେ ସଙ୍ଗେ ହଜାର ହଜାର ସୈନ୍ୟ-ସାମନ୍ତ ଆସି ତା ଚାରିପଟେ ଜମିଗଲେ। ସିପାହି କହିଲା, ''ଏ ରାଜାଙ୍କ ନଅର ଘେରାଉ କର।'' ସଙ୍ଗେ ସଙ୍ଗେ ପାଇକ, ଘୋଡ଼ସବାର ସୈନ୍ୟମାନେ 'ମାର ମାର' କହି ନଅର ଉପରେ ଚଢ଼ାଉ ଆରମ୍ଭ କରିଦେଲେ। ଖବର ନାହିଁ ଅନ୍ତର ନାହିଁ, ହଠାତ୍ ଏ ଅନ୍ଧାରି ଆକ୍ରମଣରେ ରଜାଙ୍କ ବୁଦ୍ଧି ବଣା ହୋଇଗଲା। ସେ ଦୂତ ପଠାଇ ସନ୍ଧି କରିବାକୁ ବସିଲେ। କିନ୍ତୁ ତୃତୀୟ ସିପାହି କହିଲା, ''ରଜାଙ୍କ ଝିଅ ଆମର ମନତୋଷ ଜାମା ଓ ଭରପୂର ମୁଣି ଚୋରାଇ ନେଇଛି। ସେ ଦୁଇଟି ଜିନିଷ ଆମକୁ ଫେରାଇ ଦେଲେ, ଆମେ ନଅର ଉପରୁ ଘେରାଉ ଉଠାଇ ଦେବୁ।'' ରଜା ଝିଅକୁ ଡକାଇ ସବୁ କଥା କହିଲେ। ରଜାଝିଅ କହିଲା, ''ମୁଁ ଗୋଟିଏ ଦିନ ଚେଷ୍ଟା କରେ, ତା ପରେ ସନ୍ଧି-ସର୍ତ୍ତ କଥା ବିଚାର କରିବା।''

ରଜାଝିଅ ଜାଣିଦେଲା ଯେ ଏ ଘେରାଉ ନିଶ୍ଚୟ ସେହି ତୃତୀୟ ସିପାହି ତା ମାର୍ ମାର୍ ଶିଙ୍ଗା ବଳରେ କରିଛି। ତେଣୁ ମାର୍ ମାର୍ ଶିଙ୍ଗା ଛଡ଼ାଇ ଆଣିବା ଲାଗି ସେ ଗୋଟିଏ ଉପାୟ କଲା। ସେ ଓ ତାର ଗୋଟିଏ ଦାସୀ ନାଚ୍‌ବାଲୀ ବେଶ ଧରି ଘେରାଉ କରିଥିବା ସୈନ୍ୟଙ୍କ ଛାଉଣିକୁ ଚାଲିଗଲେ। ନାନା ଭଙ୍ଗୀରେ ନାଚ୍ କରି, ନାନା ପ୍ରକାର ଗୀତ ଗାଇ ସେ ଦୁହେଁ ସୈନ୍ୟମାନଙ୍କୁ ମୋହିପକାଇଲେ। ସୈନ୍ୟମାନେ ନଅର ଘେରାଉ ଛାଡ଼ି ଏ ଦୁହିଁଙ୍କ ନାଚ୍ ଗୀତ ଦେଖିବାରେ ମନଦେଲେ। ଶେଷକୁ ଏପରି ହେଲା ଯେ ନିଜେ ତୃତୀୟ ସିପାହି ବି ସେ ନାଚ୍ ଦେଖିବାକୁ ପଳାଇ ଆସିଲା। ସେ ଆସି ନାଚ୍‌ଦେଖାରେ ଭୋଳ ଅଛି, ରଜାଝିଅ ତା ଦାସୀକୁ ଟିକିଏ ଠାରିଦେଲା। ସେ ତା ମରମ ବୁଝିପାରି ଚୁପ୍‌ଚାପ୍ ଯାଇ ତୃତୀୟ ସିପାହିର ତମ୍ବୁରୁ ମାର୍ ମାର୍ ଶିଙ୍ଗାଟି ନେଇ ଆସିଲା। ହାତରେ ଶିଙ୍ଗା ପଡ଼ିଯିବା ପରେ ରଜାଝିଅ ଆଉ ନାଚନ୍ତା ନା? ସେ ଶିଙ୍ଗା ବଜାଇ ଦେଇ ସୈନ୍ୟଙ୍କୁ କହିଲା, ''କାମ ସରିଲା, ଏଥର ତୁମେ ଚାଲିଯାଅ।'' ସଙ୍ଗେ ସଙ୍ଗେ ସୈନ୍ୟଗୁଡ଼ାକ ଉଭେଇଗଲେ। ତୃତୀୟ ସିପାହି ଦେଖିଲା, ଟିକିଏ ବେହୁସିଆର ହେବା ଫଳରେ ତା ଶିଙ୍ଗାଟି ଚୋରି ହୋଇଯାଇଛି। ବିଚାରା କାନମୁଣ୍ଡ ଆଉଁସି ପଳାଇ ଆସିଲା।

ଏଥର ତିନି ସିପାହିଙ୍କ ଅବସ୍ଥା ଯାହା ହେଲା, ଆଉ ଗାଆଣ ଗାଇଲେ ସରିବ ନାହିଁ। ଯେଉଁ ଫଟା ଦରିଦ୍ରକୁ ସେହି ଫଟା ଦରିଦ୍ର ହୋଇ ତିନି ସାଙ୍ଗ ପୁଣି ଥରେ ଭିକ ମାଗି ବୁଲିଲେ। ଶେଷକୁ ଦିନେ ଦ୍ୱିତୀୟ ସିପାହି କହିଲା, ''ଭାଇ, ଆଉ ଏକାଠି ବୁଲି ଲାଭ ନାହିଁ। ମୁଁ ମୋର ଏକଲା ଚାଲିଲି, ତୁମେ ତୁମର ଯାଅ।'' ଏହା କହି ସେ ତାର ଗୋଟିଏ ବାଟ ଧରି ଚାଲିଲା; ଅନ୍ୟ

ଦୁଇଜଣ ଆଉ ଗୋଟିଏ ବାଟରେ ଚାଲିଗଲେ ।

ଦ୍ୱିତୀୟ ସିପାହି ବୁଲି ବୁଲି କେଉଁଠି କିଛି କାମଧନ୍ଦା ପାଇଲା ନାହିଁ। ଶେଷକୁ ଦିନେ ସନ୍ଧ୍ୟାବେଳକୁ ସେ ଯାଇ ସେଇ ବଣରେ ପହଞ୍ଚିଗଲା; ଯେଉଁଠି ପ୍ରଥମେ ସେମାନେ ବାମନ ବୁଢ଼ାକୁ ଭେଟିଥିଲେ। ରାତିଟା ଗଛମୂଳେ ଶୋଇଲା। ସକାଳୁ ସକାଳୁ ଉଠି ବାଟ ଚାଲିବାକୁ ବସିଛି; ଦେଖିଲା ସେ ଯେଉଁ ଗଛମୂଳେ ଶୋଇଥିଲା, ସେଇଟି ଗୋଟିଏ ସେଓ ଗଛ। ନାଲି ଟହଟହ ସେଓଗୁଡ଼ାକ ଗଛରେ ଝୁଲୁଥାଏ। ପେଟ ତ ଭୋକରେ ଗର୍ଜୁଥାଏ। ସେ କଣ କଲା ନା, ଗଛରୁ ସେଓଟିଏ ତୋଳି ଖାଇବସିଲା। କିନ୍ତୁ ପୁଣାଏ ଖାଇଛି କି ନାହିଁ, ତା ନାକଟା କାହିଁକି କୁଣ୍ଡାଇ ହେଲା। ନାକ କୁଣ୍ଡାଇବ ବୋଲି ହାତ ମାରିଦିଏ ତ, ଦେଖିଲା ନାକଟା ଦଶହାତ ଲମ୍ବିଗଲାଣି। 'ଆରେ ଆରେ, ଇଏ କଣ ହେଲା, ଇଏ କଣ ହେଲା' ବୋଲି ନାକଟା ଅଣ୍ଡାଳୁଥାଏ; ତେଣେ ଭୋକ ସମ୍ଭାଳି ନ ପାରି ଫଳ ଖାଉଥାଏ। ସେଓଟା ସରିଲା ବେଳକୁ ତା ନାକଟା କେତେ ଲମ୍ବ ହୋଇଗଲାଣି, ତା ଆଉ ମାପି ହେଲା ନାହିଁ। ସେ ନାକ ଗଛଲତା, ନଈ ନାଳ ଉପର ଦେଇ ଅନେକ ଦୂରଯାଏ ଲମ୍ବିଗଲା। ବିଚରା କାନ୍ଦବୋବାଳି ଛାଡ଼ି ସେଠାରୁ ଉଠି ପଳାଇବାକୁ ବସିଲା; କିନ୍ତୁ ଏତେ ଲମ୍ବା ନାକ ଧରି ମଣିଷ କଣ ଉଠିପାରନ୍ତା ଯେ, ସେ ଉଠିବ ? ସେଇଠି ପଡ଼ିରହି ଖାଲି କାନ୍ଦିଲା।

ସେଣେ କଣ ହୋଇଥାଏ ନା, ପ୍ରଥମ ଓ ତୃତୀୟ ସିପାହି ନାନା ସ୍ଥାନ ବୁଲି ବୁଲି ଆସି ସେହି ବଣ ପାଖରେ ପହଞ୍ଚିଥାନ୍ତି। ବଣ ଭିତରେ ଚାଲୁ ଚାଲୁ ଦ୍ୱିତୀୟ ସିପାହିର ବଢ଼ିଥିବା ନାକଟିକୁ ସେମାନେ ଝୁଣ୍ଟିପକାଇଲେ। 'କଣଟା ଏପରି ଦଢ଼ିଛି' ବୋଲି ସେମାନେ ପ୍ରଥମେ ବୁଝିପାରିଲେ ନାହିଁ। କେଉଁଠୁ ଏପରି ଲମ୍ବି ଆସିଛି ଦେଖିବା ଲାଗି ତା'ରି କରେ କରେ ଯାଉ ଯାଉ ସେମାନେ ଯାଇ ସେମାନଙ୍କ ସାଙ୍ଗ ଦ୍ୱିତୀୟ ସିପାହି ପଡ଼ିଥିବା ଗଛମୂଳେ ପହଞ୍ଚିଗଲେ। ସେତିକିବେଳେ ଜଣାପଡ଼ିଲା ଯେ, ତା'ରି ନାକଟା ଏପରି ଲମ୍ବିଯାଇଛି। କଳବଳ ଦେଖି ଦୁଇବନ୍ଧୁ ତାକୁ ସେଠାରୁ ଟେକିନେଇ ବଇଦ ଘରେ ପହଞ୍ଚାଇବାକୁ ଚେଷ୍ଟା କଲେ। କିନ୍ତୁ ତାକୁ ସିନା ଟେକିଲେ, ତାର ଏତେବଡ଼ ନାକକୁ ଟେକି ପାରିଲେ ନାହିଁ। ନିଜ ହାତରେ ହେଲା ନାହିଁ ଦେଖି ପାଖ ଗାଁକୁ ଯାଇ ଗୋଟିଏ ଗଧ ଅଡ଼ାଇ ଆଣିଲେ। କିନ୍ତୁ ସେ ଗଧ ବି ତାକୁ ବୋହି ନେଇ ପାରିଲା ନାହିଁ। ଶେଷକୁ ତିନି ସାଙ୍ଗ ବସି କପାଳକୁ ନିନ୍ଦିଲେ। ଏତିକିବେଳେ ଦେଖାଗଲା ଯେ, ସେ ନାଲି କୋଟ୍‌ବାଲା ବାମନ ବୁଢ଼ା ଆସୁଛି। ଏମାନଙ୍କୁ ଦେଖି ବୁଢ଼ା ହସି ହସି ପଚାରିଲା, "କି ରେ ପୁଅ, କଣ ଇମିତି ଚିନ୍ତାରେ ବସିଯାଇଛ ?" ଏମାନେ

ଠିକେ ଠିକେ ଆପଣା ହାଲତ ଶୁଣାଇ ଏ ବିପଦରୁ କିପରି ରକ୍ଷା ପାଇବେ ବୋଲି ପଚାରିଗଲେ। ବୁଢ଼ା କହିଲା, "ଚିନ୍ତା କରନି, ଏ ଗଛର ସେଓ ଯେ ଖାଇବ, ତା ନାକ ବଢ଼ିଯିବ। କିନ୍ତୁ ସେ ପାଖର ଯେଉଁ ନାସପାତି ଗଛଟା ଦେଖୁଛ, ତା ଫଳର ଗୁଣ ଠିକ୍ ଓଲଟା। ସେ ଫଳ ଖାଇଲେ ବଢ଼ିଥିବା ନାକ ଛୋଟ ହୋଇଯିବ। ଖାଇ ଦେଖ।"

ଏମାନେ ସଙ୍ଗେ ସଙ୍ଗେ ଗୋଟିଏ ନାସପାତି ଆଣି ଦ୍ୱିତୀୟ ସିପାହିକୁ ଖୁଆଇଦେଲେ। ଚାହୁଁ ଚାହୁଁ ବଢ଼ିଯାଇଥିବା ନାକ ଛୋଟ ହୋଇ ଆସି ଆଗେ ଯେତକିଟିଏ ହୋଇଥିଲା, ସେତିକିଟିଏ ହୋଇ ରହିଗଲା। ତିନିସାଙ୍ଗ ଆଶ୍ୱସ୍ତ ହୋଇ ବାମନ ବୁଢ଼ାକୁ ବହୁ ପ୍ରଶଂସା କଲେ। ବୁଢ଼ା କହିଲା, "ଏଥର ତୁମେ ଏ ଯେଉଁ ନୂଆ କଥାଟି ଜାଣିଗଲ, ଏକୁ ନେଇ-ଆଣି-ଥୋଇ ପାରିଲେ, ହରାଇଥିବା ଜିନିଷ ଫେରିପାଇବ।"

ଏତକ କହି ବୁଢ଼ା ଚାଲିଗଲା। ବୁଢ଼ା କଥାର ମରମ ବୁଝି ଏ ତିନିସାଙ୍ଗ କିଛି ସେଓ ଓ କିଛି ନାସପାତି ଧରି ସେହି ରଜାଝିଅ ଥିବା ଦେଶକୁ ଚାଲିଲେ। ଦ୍ୱିତୀୟ ସିପାହି ଫଳବାଲା ବେଶ ଧରି ନଅର ଭିତରେ ପଶିଗଲା। ଭଲ ଭଲ ସେଓ ଆଣିଛି, ପ୍ରଥମେ ନଅରରେ ବିକିଲେ ପରେ ଅନ୍ୟକୁ ବିକିବ କହି ସେ ଯେତେବେଳେ ତା ପସରା ମେଲାଇଦେଲା, ରଜାଝିଅ କହିଲା, ସେ ସବୁତକ ସେଓ କିଣିବ। ଦ୍ୱିତୀୟ ସିପାହି ତାକୁ ସବୁତକ ସେଓ ବିକିଦେଇ ପଳାଇ ଆସିଲା। ରଜାଝିଅ ଯିମିତି ସେ ସେଓ ଖାଇଛି, ଦେଖ ତା ନାକର ଦଶା! ନାକ ବଢ଼ିଗଲା ଯେ ଆଉ ସେ ଘର ଭିତରେ ଜାଗା ହେଲା ନାହିଁ। ରଜାଝିଅ କାନ୍ଦ ବୋବାଳି ଛାଡ଼ି ଖାଲି ତଳେ ଗଡ଼ିଲା। କଥା କଣ ବୋଲି ରଜା ଆସି ଦେଖନ୍ତି ତ ଝିଅର ନାକ ଦଶହାତ ଖଣ୍ଡେ ଲମ୍ବା ହୋଇଗଲାଣି। ଖାସା କଥା! ଇଏ କି ରୋଗ ଆସିଲା ବୋଲି ରଜା ବୈଦ୍ୟ କବିରାଜ ଡକାଇ ଔଷଧ ବ୍ୟବସ୍ଥା କଲେ। କିନ୍ତୁ ସେ ନାକ, ନା ବୈଦ୍ୟ ନା କବିରାଜ, କାହାରି ଔଷଧ ମାନିଲା ନାହିଁ। କେଉଁଥିରେ କିଛି ହେଲାନାହିଁ। ଦିନରାତି ରଜାଝିଅ 'ମୋ ନାକ, ମୋ ନାକ' ହୋଇ କାନ୍ଦିଲା।

ଏପରି ଦୁଇଦିନ ଯିବା ପରେ ଦ୍ୱିତୀୟ ସିପାହି ନାସପାତିରୁ ଗୋଟିଏ ଚିରୁଡ଼ା ବଟୁଆରେ ପକାଇ ବୈଦ୍ୟ ବେଶରେ ଯାଇ ନଅରରେ ପହଞ୍ଚିଗଲା। ରାଜବୈଦ୍ୟମାନେ ହାରିଗଲେ, ଏ ଗୋଟିଏ ବିଦେଶୀ ବୈଦ୍ୟ ଅବା ପାରିବ ଭାବି ରଜା ତାକୁ ନେଇ ଝିଅ ପାଖରେ ପହଞ୍ଚାଇଦେଲେ। ରଜାଝିଅର ନାକକୁ ଟିକିଏ ଫୁଙ୍କାଫୁଙ୍କି କରିଦେଇ ସିପାହି କହିଲା, "ମଣିମା, ମୁଁ ପାନେ ଔଷଧ ଦେଉଛି। ଆଜିକ

ଖାଇ କଣ ହେଉଛି ଦେଖନ୍ତୁ; କାଲିକି କଥାଭାଷା।'' ଏହା କହି ସେ ରଜାଝିଅକୁ ନାସପାତି ଚିରୁଡ଼ାକ ଖୋଇଦେଲା। ତା ପରଦିନ ସକାଳ ବେଳକୁ ରଜାଝିଅର ନାକ ଅଳ୍ପ ଛୋଟ ହୋଇ ଟିକିଏ ଆରାମ ଲାଗୁଥାଏ। ସକାଳୁ ସକାଳୁ ମ ନୂଆ ବୈଦ୍ୟଙ୍କୁ ଡକରା ପଡ଼ିଲା। ରଜା କହିଲେ, ''ଖୁବ୍ ଭଲ ଔଷଧ ଦେଇଥିଲେ: ଝିଅର ଆଠଣା ଭଲ ହୋଇଯାଇଛି। ଆଉ କଡ଼ା କରି ପାନେ ଦେଇଦିଅନ୍ତୁ, ସେ ଦୁଃଖରୁ ରକ୍ଷାପାଉ।'' ଦ୍ୱିତୀୟ ସିପାହି ମନେ ମନେ କହୁଥାଏ, 'ରହ ରହ, ଭଲ କରି କଡ଼ା ଔଷଧ ପାନେ ଦେଉଛି।' ଏପରି ଭାବି ସେ ରଜାଝିଅକୁ ଆଗରୁ କାଟିକୁଟି ଟିକି ଟିକି କରି ରଖିଥିବା ସେଓରୁ ପୁଳାଏ ଖୁଆଇଦେଲା। ବୈଦ୍ୟ ନଅର ଛାଡ଼ିବା ବେଳକୁ ରଜାଝିଅର ନାକ ପୁଣି ଥରେ ପାଞ୍ଚ-ଛଅ ହାତ ବଢ଼ିଗଲାଣି। ଦିନତମାମ ସେ ଝିଅ ଛେଚିକୁଟି ହୋଇ 'ମୋ ନାକ, ମୋ ନାକ' କହି କାନ୍ଦିଲା। ତେଣୁ ସକାଳୁ ସକାଳୁ ପୁଣି ଥରେ ରଜାଘର ଲୋକ ଆସି ବୈଦ୍ୟଙ୍କୁ ଡାକି ନେଲେ। ବୈଦ୍ୟ ଯାଇ ସବୁ ଦେଖାଶୁଣା କରି କହିଲେ, ''ମଣିମା, ମୁଣ୍ଡ ରହିଲେ ତୁଣ୍ଡ କହିବ। ଯଦି କିଛି ଭୁଲ୍ ନ ବୁଝିବେ ତେବେ ମୁଁ କହିବି।''

ରଜା କହିଲେ, ''କିଛି ଭୁଲ ବୁଝିବି ନାହିଁ। କଥା କଣ କହନ୍ତୁ।''

ବୈଦ୍ୟ ବେଶରେ ଥିବା ଦ୍ୱିତୀୟ ସିପାହି କହିଲା, ''ମୋ ଔଷଧ ନିଶ୍ଚୟ କାଟିବା କଥା; କିନ୍ତୁ ରୋଗୀ ପାଖରେ ଯଦି କିଛି ଚୋରି ମାଲ ଥିବ, ତେବେ ଔଷଧ ଓଲଟା କାମ କରିବ– ରୋଗକୁ ବଢ଼ାଇ ଦେବ। ମୋ ଔଷଧ ପ୍ରଥମ ପାନରେ ରୋଗ କମାଇ ଦ୍ୱିତୀୟ ପାନରେ ଏପରି ବଢ଼ନ୍ତା ନାହିଁ। ତେଣୁ ମୁଁ ଭାବୁଛି, ଝିଅ ଜାଣତରେ ହେଉ ବା ଅଜାଣତରେ ହେଉ, କିଛି ଚୋରି ମାଲ ରଖିଛନ୍ତି। ସେତକ ମୋ ହାତକୁ ଦେଇଦେଲେ, ମୁଁ ପୁଣି ମନ୍ତ୍ର କରି ଔଷଧ ଦେବି ରୋଗ ନିଶ୍ଚୟ କମିଯିବ।''

ରଜା ଝିଅପାଖକୁ ଯାଇ ଏ କଥା ଶୁଣାଇ ଦେଲେ। କିନ୍ତୁ ଝିଅ ତାହାଣୀ ଚୋରି ମାଲ ରଖିଥିବା କଥା ମନାକଲା। ବୈଦ୍ୟ କହିଲେ, ''ଆଉ ପାନେ ଔଷଧ ଦେଉଛି, ଦେଖାଯାଉ କଣ ହେଉଛି।'' ଏହା କହି ସେ ଆହୁରି ଥୋଡ଼ାଏ ସେଓ ତାକୁ ଖୁଆଇ ଦେଲା। ସେଦିନ ରାତିରେ ଦେଖ ସେ ଝିଅର ଅବସ୍ଥା! ତା ନାକ ଏପରି ବଢ଼ିଗଲା ଯେ, ଯାଇ କାନ୍ଥ ବାଡ଼କୁ ଠେଲିଲା। ସେ ଆଉ କଷ୍ଟ ସହି ନ ପାରି ରାତାରାତି ବୈଦ୍ୟଙ୍କୁ ଡକାଇଲା। କହିଲା, ''ହେ ବୈଦ୍ୟରାଜ! ମୋ ପାଖରେ ତିନୋଟି ଚୋରି ଜିନିଷ ରହିଛି। ସେତକ ମୁଁ ଆପଣଙ୍କୁ ଦେଇଦେଉଛି। ଆପଣ ତାକୁ ନେଇ ପୋଡ଼ି ଫୋପାଡ଼ି ଦିଅନ୍ତୁ; ମତେ ଏ ରୋଗରୁ ରକ୍ଷା

କରନ୍ତୁ ।'' ଏହା କହି ସେ ବୈଦ୍ୟହାତକୁ ଲଗପୂର ମୁଣି, ମନତୋଷ ଜାମା ଓ ମାର୍ ମାର୍ ଶିଙ୍ଗା ଦେଇଦେଲା । ବୈଦ୍ୟ ସେତକ ହାତପଇଠ କରି ରଜାଝିଅକୁ ଗୋଟିଏ ନାସପାତି ଖୁଆଇ ଦେଲା; ଫଳରେ ଘଣ୍ଟାକ ଭିତରେ ତା ନାକ ଆଗପରି ହୋଇଗଲା । ସେ ବିଚାରୀ ଟିକିଏ ଆରାମରେ ନିଃଶ୍ୱାସ ମାରୁ ମରୁ ବୈଦ୍ୟ ଏ ତିନିଟି ଜିନିଷ ଧରି ସାଙ୍ଗଙ୍କ ପାଖକୁ ପଳାଇ ଆସିଲା ।

ତିନି ସାଙ୍ଗ ନିଜ ନିଜ ଜିନିଷ ଫେରିପାଇ ପୁଣି ଥରେ ସୁଖରେ ଘରଦ୍ୱାର କରି ରହିଲେ । ସେହିଦିନଠାରୁ ସେ କୁହୁକ ଜିନିଷର ଗୁଣ ଆଉ କାହାକୁ କହିଲେ ନାହିଁ ।

# ବେଙ୍ଗ ରାଜକୁମାର

ରଜାଙ୍କର ଝିଅଟିଏ ଥାଏ ଯେ, ଭାରି ଅଲିଅଳ । ବୟସ ହେଲା ପରେ ବି ସେ ତା ଖେଳ ଛାଡ଼ି ନ ଥାଏ । ଦିନେ ଉପରବେଳା କଥା । ନଅର ପଛ ବଣରେ ସେ ଗୋଟିଏ ଝରଣା ପାଖରେ ବସି ପେଣ୍ଡୁ ଖେଳୁଛି । ଏତିକିବେଳେ ତା ସୁନାପେଣ୍ଡୁଟି ଗଡ଼ିଗଲା, ଗଡ଼ି ଗଡ଼ି ଯାଇ ଝରଣାରେ ପଡ଼ିଗଲା । ଚାହୁଁ ଚାହୁଁ ଝରଣା ଭିତରେ କୁଆଡ଼େ ଯେ ଲୁଚିଗଲା, ଆଉ ଦେଖାଗଲା ନାହିଁ । ରଜାଝିଅ ଝରଣା କୂଳେ କୂଳେ କେତେ ଖୋଜିଲା; କିନ୍ତୁ ପାଇଲା ନାହିଁ । ତେଣୁ ସେ ତୁଠ ପଥରରେ ବସି କାନ୍ଦିଲା । ସେ ତା ପେଣ୍ଡୁ ପାଇଁ କଇଁକଇଁ ହୋଇ କାନ୍ଦୁଛି, ଏତିକିବେଳେ ଶୁଣିଲା, କିଏ ଜଣେ କହୁଛି—

''କହ ଅଲିଅଳ ରାଜକୁମାରୀ,<br>
ନାହିଁକି ଯାଉଛି ଲୋତକ ଝରି ?<br>
ମୂଲ ଦେବ ବୋଲି ଯଦି ଜାଣିବି<br>
ହଜିଯାଇଥିଲେ ଖୋଜି ଆଣିବି ।''

କିଏ ଏପରି କହୁଛି ବୋଲି ରଜାଝିଅ ଚାରିଆଡ଼କୁ ଚାହିଁଲା । କିନ୍ତୁ କାହାରିକୁ ଦେଖି ପାରିଲା ନାହିଁ । ସେ ବସି କାନ୍ଦୁଛି, ପୁଣି ଥରେ ସେହି କଥା ଶୁଭିଲା । ଏଥର ରଜାଝିଅ ଭଲକରି ଶବ୍ଦ ବାରିଲା । ଚାହୁଁ ଚାହୁଁ ଦେଖିଲା, ଗୋଟିଏ ବେଙ୍ଗ ପାଣି ଭିତରୁ ମୁଣ୍ଡ ଟେକି ଏପରି କହୁଛି । ସେ କହିଲା, ''କିଏ ରେ, ପାଣିବେଙ୍ଗ କହୁଛୁ କି ?'' ବେଙ୍ଗ କହିଲା, ''ହଁ ଗୋ ହଁ ।'' ରଜାଝିଅ ପଚାରିଲା, ''ତୁ କିପରି ମୋ ହଜିଲା ଚିଜ ଖୋଜି ଆଣିଦେବୁ ରେ ? ମୋର ସୁନାପେଣ୍ଡୁଟି

ପାଣିରେ ପଡ଼ିଯାଇଛି।''

ବେଙ୍ଗ କହିଲା, ''ଏଇ କଥା ତ! ମୁଁ ଗୋଟିଏ ବୁଡ଼ା ମାରିଲେ, ଯେଉଁଠି ପଡ଼ିଥାଉ ପଛେ ନେଇଆସିବି। କିନ୍ତୁ ତୁମେ କି ମୂଲ ଦେବ?''

ରଜାଝିଅ କହିଲା,

''ହୀରା ନୀଳା ମୋତି ମାଣିକ ତୁହି ଯାହା ଚାହିଁବୁ
ପେଣ୍ଡୁ ଆଣିଦେଲେ ମୋହର, ଜାଣ ନିଶ୍ଚେ ପାଇବୁ।''

ବେଙ୍ଗ କହିଲା, ''ମୋର ହୀରାନୀଳାରେ କାମ ନାହିଁ। ତୁମେ ଯଦି ମତେ ତୁମର ସାଥୀ କରିନେବ, ତା' ହେଲେ ମୁଁ ନିଶ୍ଚୟ ତୁମର ସୁନାପେଣ୍ଡୁ ଖୋଜି ଆଣିଦେବି। ମତେ ତୁମ ପାଖରେ ବସିବାକୁ ଦେବ, ତୁମ ସୁନାଥାଳିରେ ଖାଇବାକୁ ଦେବ, ତୁମ ପଲଙ୍କରେ ଶୋଇବାକୁ ଦେବ– ତା' ହେଲେ ଯାଇ ମୁଁ ପେଣ୍ଡୁ ଖୋଜି ଆଣିଦେବି।''

ରଜାଝିଅ କହିଲା, ''ହଁ, ତୁ ମୋର ସାଥୀ ହେବୁ, ପାଖରେ ବସିବୁ, ସୁନାଥାଳିରେ ଖାଇବୁ, ଶେଯରେ ଶୋଇବୁ। ଯା, ମୋ ପେଣ୍ଡୁ ଖୋଜିଆଣ।''

ବେଙ୍ଗ ଟୁବ୍‌କିନା ପାଣିରେ ବୁଡ଼ିଗଲା। କିଛି ସମୟ ଯାଇଛି କି ନାହିଁ, ସେ ପାଟିରେ ସୁନାପେଣ୍ଡୁଟି ଧରି କୂଳକୁ ଚାଲି ଆସିଲା। ସୁନାପେଣ୍ଡୁ ଫେରିପାଇ ରଜାଝିଅର ଭାରି ଖୁସି! ନାଚି ନାଚି ପେଣ୍ଡୁ ଖେଳି ଖେଳି ସେ ନଅରକୁ ଦୌଡ଼ି ପଳାଇ ଆସିଲା। ପଛରୁ ବେଙ୍ଗ ଡାକୁଥାଏ, ''ରାଜକୁମାରୀ, ରାଜକୁମାରୀ, ମତେ ସାଙ୍ଗରେ ନିଅ; ମତେ ପରା ସାଥୀ କରିବ, ଛାଡ଼ି ପଳାଉଛ କାହିଁକି? ମୁଁ କଣ ତୁମ ସାଙ୍ଗରେ ଦୌଡ଼ି ପାରିବି? ରହ ରହ...''

କିନ୍ତୁ ରଜାଝିଅ ପଳାଉ ପଳାଉ କହିଲା, ''ଛିଆ ରେ, ତୁ ବେଙ୍ଗଟେ, ମୋର କି ସାଥୀ ହେବୁ?''

ବେଙ୍ଗ ବିଚାରା କଣ ଆଉ କରିବ? କାନ ମୁଣ୍ଡ ଆଉଁସି ପୁଣି ପାଣିରେ ପଶିଗଲା। କିନ୍ତୁ ସେଦିନ ରାତି କଥା। ସୁନାଥାଳିଆ, ସୁନାଗିନାରେ କେତେ ପ୍ରକାର ପିଠାପଣା ପରଷା ହୋଇଛି, ରଜାଝିଅ ତା ବାପା ମାଆଙ୍କ ସାଙ୍ଗରେ ବସି ଖାଉଛି, ଖୁସିଗପ ଚାଲିଛି। ଏ ସମୟରେ ଶୁଣାଗଲା, ଫୁକୁଲୁ ଫାକୁଲୁ ହୋଇ ଡେଇଁଡେଇଁକା କେହି ଜଣେ ପାହାଚ ଚଢ଼ି ଆସୁଛି। କିଏ ଆସୁଛି ବୋଲି ସମସ୍ତେ ସେ ଆଡ଼କୁ କାନେଇଲେ। ଶୁଣାଗଲା, ଦୁଆରମୁହଁରେ ଠିଆହୋଇ କେହି ଜଣେ କହୁଛି–

''ରାଜକୁମାରୀ, ରାଜକୁମାରୀ
ମନରୁ ଦିଅନା ମୋତେ ପାଶୋରି;
ଦୁଆର ଖୋଲିଦିଅ।

ଝରଣା କୂଳର କଥାଟିହେଜି
ସତ୍ୟ ରଖିଣ ସରମ ତେଜି
ସାଥୀକୁ ପାଶେ ନିଅ।"

ଏ ଡାକ ଶୁଣି, କିଏ ଡାକୁଛି ବୋଲି ରଜାଝିଅ ଯାଇ ଦୁଆର ଖୋଲିଦେଲା। ଦେଖିଲାବେଳକୁ କିଏ ନା, ସେହି ପାଣିବେଙ୍ଗଟି ଡାକୁଛି। ଟକା ଟକା ଆଖି ଖୋଲି ବଡ଼ ଆଶାରେ ଅନାଇଁ ରହିଛି।

'ଛିଃ ଲୋ' କହି ରଜାଝିଅ ସଙ୍ଗେ ସଙ୍ଗେ କବାଟ ବନ୍ଦ କରିଦେଇ ପଳାଇ ଆସିଲା। କିନ୍ତୁ ପାଣିବେଙ୍ଗଟା ଏତେ ଦୂର ଆସି ଦୁଆରମୁହଁରେ ଡାକୁଛି ଦେଖି ତା ମନରେ ଭୟ ପଶିଗଲା। ସେ ଭୟରେ ଥରୁଛି ଦେଖି ରାଜା ପଚାରିଲେ, "କି ଲୋ ଝିଅ, କଥା କଣ? କିଏ ଡାକୁଛି, କିଛି କହିଲୁ ନାହିଁ। ଦୁଆରଟା ବନ୍ଦ କରିଦେଇ ଏପରି ଥରୁଛୁ କାହିଁକି? ହେଲା କଣ?"

ଝିଅ କହିଲା, "କଣ କହିବି ବାପା! ଆଜି ଝରଣା ପାଖରେ ଖେଳିଲା ବେଳେ ମୋ ସୁନାପେଣ୍ଡୁଟି ପାଣିକି ଗଡ଼ିଗଲା। ମୁଁ ଖୋଜି ଖୋଜି ନ ପାଇଲାରୁ ବସି କାନ୍ଦୁଛି, ଗୋଟେ ବେଙ୍ଗ ଆସି କହିଲା, ମତେ ଯଦି ତୁମର ସାଥୀ କରିନେବ, ତେବେ ମୁଁ ପେଣ୍ଡୁ ଖୋଜି ଆଣିଦେବି। ମୁଁ ହଁ କରିଦେଲି; ସେ ପେଣ୍ଡୁ ଖୋଜି ଆଣିଦେଲା। ଏବେ ସେହି ବେଙ୍ଗଟା ଆସି ଡାକୁଛି।"

ରାଜା କହିଲେ, "ତୁ ତାକୁ ସାଥୀ କରିବୁ ବୋଲି ଥରେ ହଁ କରିଛୁ, ଏବେ ଆଉ ଦୁଆର ଦେଇଦେଉଛୁ କାହିଁକି? ଖୋଲି ଦେ, ସେ ଆସୁ।"

ରଜାଝିଅ ଯାଇ ଦୁଆର ଖୋଲିଦେଲା। ବେଙ୍ଗ ଫୁକୁଲୁ ଫାକୁଲୁ ହୋଇ ଡେଇଁଡେଇଁକା ଆସି ଚଉକି ପାଖରେ ପହଞ୍ଚିଗଲା। ଏଥର କହିଲା, "ରାଜକୁମାରୀ, ମତେ ଟେକି ନେଇ ଟିକିଏ ତୁମ ପାଖରେ ବସାଅ।"

ରଜାଝିଅ ବାଧ ହୋଇ ତାକୁ ଟେକିଆଣି ଚଉକିରେ ବସାଇଲା। ସମସ୍ତେ ବସି ଖାଉଛନ୍ତି— ବେଙ୍ଗ କହିଲା, "ମତେ ଟିକିଏ ତୁମ ସୁନାଥାଳି ପାଖରେ ବସାଅ, ମୁଁ ଖାଇବି।"

ରଜାଝିଅ ତାକୁ ଟେକି ନେଇ ନିଜ ସୁନାଥାଳି ପାଖରେ ବସାଇଲା। ବେଙ୍ଗ ସେ ଥାଳିରୁ ପିଠାପଣା କରି ପେଟେ ଖାଇଲା। ସମସ୍ତେ ଖାଇପିଇ ସାରିବା ପରେ ବେଙ୍ଗ ରଜାଝିଅକୁ କହିଲା, "ଦିନସାରା ଡେଇଁ ଡେଇଁ ବଡ଼ ହାଲିଆ ଲାଗୁଛି, ମତେ ନେଇ ଚାଲ, ତୁମ କଅଁଳ ଶେଯରେ ଶୁଆଇ ଦେବ ଯେ ଟିକିଏ ଆରାମରେ ଶୋଇବି।"

ସବୁ କଥା ଯାହା ଯେମିତି ହୋଇଗଲା— ବେଙ୍ଗଟା ଯାଇ ତା ସଫାସୁତୁରା

ଶେଯ ତକିଆରେ ଶୋଇବ ଶୁଣି ରଜାଝିଅକୁ ବଡ଼ ଅଡୁଆ ଲାଗିଲା । କିନ୍ତୁ କଣ କରିବ ? ଥରେ ତ ସତ୍ୟ କରି କହିଦେଇଛି, ଏବେ କଥା ଭାଙ୍ଗିବ କିପରି ? ବେଙ୍ଗକୁ ନେଇ ନିଜ ଶେଯ ଉପରେ ବସାଇ ଦେଲା । ରେଶମ କନାର ଚଦର ପଡ଼ି ଶେଯଟି ଚକ୍‌ଚକ୍ କରୁଥାଏ । ବେଙ୍ଗ ତା ଉପରେ ଟିକିଏ ଏପଟ ସେପଟ ହୋଇ ଡେଇଁ ଶେଷରେ ଡେଇଁଡେଇଁକା ଯାଇ ତକିଆ ଉପରେ ଶୋଇପଡ଼ିଲା । ରାତିଟା ସେପରି ପାହିଗଲା, ସକାଳ ହେଉ ହେଉ ବେଙ୍ଗ ଶେଯରୁ ତଳକୁ ଡେଇଁପଡ଼ିଲା । ଡେଇଁଡେଇଁକା ପୁଣି ଥରେ ବଣକୁ ଚାଲିଗଲା । ରଜାଝିଅ ଭାବିଲା— ଗଲା, ଆଉଜି-ପାଉଜି ଗଲା । ବେଙ୍ଗଟା ସାଥିରେ ଖାଇବ କିଏ, ଶୋଇବ କିଏ ଲୋ ମା' ! କିନ୍ତୁ ସେଦିନ ସନ୍ଧ୍ୟାବେଳେ ସମସ୍ତେ ଖାଇବାକୁ ବସିଛନ୍ତି, ବେଙ୍ଗ ଆସି ପୁଣି ଥରେ ଡାକ ପକାଇଲା—

"ରାଜକୁମାରୀ, ରାଜକୁମାରୀ
ମନରୁ ଦିଅନା ମତେ ପାଶୋରି,
ଦୁଆର ଖୋଲିଦିଅ..."

ସେ ଡାକ ଶୁଣି ରଜାଝିଅ ଛାନିଆ । 'ଆସିଲା ଲୋ ମା, ପୁଣି ଥରେ ଆସିଲାଣି' କହି ସେ ଯାଇ ଦୁଆର ଖୋଲିଦେଲା । ବେଙ୍ଗ ତା ଆଗଦିନ ଖାଇଲା ପରି ଖାଇଲା, ଶୋଇଲା ପରି ଶୋଇଲା । ପୁଣି ସକାଳ ହେଉ ହେଉ ବଣକୁ ଚାଲିଗଲା । ତୃତୀୟ ଦିନ ରାତିରେ ବି ଠିକ୍ ସେହିପରି ହେଲା । କିନ୍ତୁ ସେଦିନ ରାତି ପାହି ସକାଳ ହେଲା ବେଳକୁ ରଜାଝିଅ ଶେଯରୁ ଉଠିପଡ଼େ ତ, ଦେଖିଲା ତା ପାଖରେ ଜଣେ ସୁନ୍ଦର ରଜାପୁଅ ଶୋଇଛି । କି ସୁନ୍ଦର ମୁହଁ, କି ସୁନ୍ଦର ଆଖି, କି ସୁନ୍ଦର ଲୁଗାପଟା— ଏ କିଏ ! କିପରି ଆସି ଏଠାରେ ଶୋଇଲା ବୋଲି ସେ ଆବାକାବା ହୋଇ ଚାହିଁଚି, ସେ ରଜାପୁଅର ନିଦ ଭାଙ୍ଗିଗଲା । ରଜାଝିଅ ଆଶ୍ଚର୍ଯ୍ୟ ହେଉଛି ଦେଖି ସେ କହିଲେ— "ଆଗୋ, ଡର ନାହିଁ ! ମୁଁ ହେଉଛି ସେହି ବେଙ୍ଗ, ଯାହାକୁ ତୁମେ ସାଥୀ କରିନେଇଛ ।"

"ସତେ ! ଇଏ କି ଅଘଟନ କଥା !!" —କହୁ କହୁ ରଜାଝିଅ ଜିଭ କାବୁଡ଼ି ପକାଇଲା ।

ରଜାପୁଅ କହିଲା, "ଶୁଣ, ମୁଁ କହୁଛି" —ରଜାପୁଅ ତା ଜୀବନ କାହାଣୀ ଆରମ୍ଭ କଲାବେଳକୁ ଝିଅ ଗମ୍ଭୀରିରେ ଆଉ କିଏ ପଶିଛି ବୋଲି ରଜାରାଣୀ ଧାଇଁଆସିଲେ । ସେମାନଙ୍କୁ ଓଳଗି ହୋଇ ରଜାପୁଅ କହିଲା— "ମୁଁ ଗୋଟିଏ ଦେଶର ରାଜକୁମାର । ଥରେ ମୁଁ ଓ ମୋ ସାଙ୍ଗ ହେନେରୀ ବୁଲି ବାହାରିଥିଲୁ । ବାଟରେ ଗୋଟିଏ ଡାହାଣୀ ସାଙ୍ଗରେ ଦେଖାହେଲା । କଥାରେ କଥାରେ ତା

ସହିତ କଳି ହୋଇଗଲା। ସେ ମନ୍ତ୍ର ପଢ଼ି ମତେ ବେଙ୍ଗ କରିଦେଲା। ସେହିଦିନୁ ମୁଁ ବେଙ୍ଗ ହୋଇ ବୁଲୁଛି। ଡାହାଣୀ କହିଥିଲା, ଯଦି କେହି ରାଜକୁମାରୀ ମତେ ସାଥୀ କରିନେଇ ତିନି ରାତି ପାଖରେ ବସାଇବ, ଏକା ଥାଳିରେ ଖୋଇବ ଓ ଏକା ଶେଯରେ ଶୁଆଇବ, ତେବେ ଯାଇ ମୁଁ ପୁଣି ଥରେ ମଣିଷ ହେବି—ନ ହେଲେ ନାହିଁ। ମୁଁ ଅନେକ ବଣବୁଦା ବୁଲି ବୁଲି ଶେଷକୁ ଆସି ଏଇ ନଅର ପଛ ବଣରେ ଦେଖିଲି ଯେ ରାଜକୁମାରୀ ସବୁଦିନ ସେ ଝରଣା ପାଖରେ ପେଣ୍ଡୁ ଖେଳୁଛନ୍ତି। ଥରେ କେବେ ତାଙ୍କ ଉପକାର କରିଦେଇ ସାଥୀ ହେବି ବୋଲି ଭାବି ଭାବି ମୁଁ ସେ ଝରଣା ପାଣିରେ ରହିଥିଲି। ଶେଷକୁ ସେ ସୁଯୋଗ ମିଳିଗଲା। ତାଙ୍କରି ଦୟାରୁ ମୁଁ ପୁଣି ଥରେ ମଣିଷ ହୋଇ ଠିଆହେଲି। ଏଥର ସେ ମୋତେ ପାଖରେ ରଖନ୍ତୁ, ନ ହେଲେ ଦୂରକୁ ତଡ଼ନ୍ତୁ, ଯାହା ତାଙ୍କର ଇଚ୍ଛା।''

ରଜାରାଣୀ ତ ଏକଧ୍ୟାନରେ ଏ ସବୁ ଶୁଣୁଥିଲେ। ସେମାନେ କହିଲେ, ''ବାପା, ସାଥୀ କରିସାରି କିଏ କଣ କାହାକୁ ପାଖରୁ ତଡ଼େ? ଆମର ତ ପୁଅପୁତା ନାହାନ୍ତି। ତୁମେ ଆମ ଝିଅକୁ ବାହା ହୋଇ ଏଇଠି ରାଜୁତି କର।''

ରଜାଝିଅ କିଆଁ ଏ ପ୍ରସ୍ତାବରେ ଅରାଜି ହୁଅନ୍ତା? ସେହିଦିନ ମହା ଆଡ଼ମ୍ବରରେ ବାହାଘର ହୋଇଗଲା। ବାଜା-ବାଣରେ ଚଉଦିଗ କମ୍ପିଲା। କିଛି ଦିନ ଅନ୍ତେ ରାଜକୁମାରଙ୍କ ସାଙ୍ଗ ହେନେରୀ ଆସି ସେଠାରେ ପହଞ୍ଚିଗଲା। ରାଜକୁମାରଙ୍କୁ ହରାଇବା ଦିନୁ ତା' ମନରେ ଏତେ ଦୁଃଖ ହୋଇଥାଏ ଯେ କାଳେ ଦୁଃଖରେ ଛାତି ଫାଟିଯିବ ବୋଲି ସେ ଛାତିରେ ତିନିଟା ଲୁହା ପଟି ବାନ୍ଧିଥାଏ। ଏବେ ରାଜକୁମାରଙ୍କୁ ଦେଖି ସେ ଭଡ଼ଭାଡ଼ କରି ଲୁହାପଟିଗୁଡ଼ାକ ଛିଣ୍ଡାଇପକାଇଲା। ସମସ୍ତେ ସୁଖରେ ରହିଲେ। ଆମେ ସେତିକି ବେଳକୁ ନ ଥିଲେ; ଥିଲେ ଯାଇ ଟିକିଏ ଦେଖି ଆସିଥାନ୍ତେ।

—